# ଯାହା ହଜାଇ ଦେଇଛି ଥରେ

## (ଏକ ସ୍ମୃତି ଆଲେଖ୍ୟ)



କାର୍ଗ
କାଉନ୍‌ସିଲ୍ ଅଫ୍ ଏବିଲିଟି ରିସର୍ଚ୍ଚ ଆଣ୍ଡ ଜେନେରେସନ୍
ଭୁବନେଶ୍ୱର

# ଯାହା ହଜାଇ ଦେଇଛି ଥରେ
(ଏକ ସ୍ମୃତି ଆଲେଖ୍ୟ)

ଲେଖକ ଶ୍ରୀମତୀ ସତ୍ୟଭାମା ବିଶ୍ୱାଳ
ପ୍ରକାଶନ କାଳ ଶ୍ରୀଗୁଣ୍ଡିଚା, ୨୦୧୮

**ପ୍ରକାଶକ:**
କାଉନ୍‌ସିଲ୍ ଅଫ୍ ଏବିଲିଟି ରିସର୍ଚ୍ଚ ଆଣ୍ଡ ଜେନେରେସନ୍ (କାର୍ଗ)
ପ୍ଲଟ ନମ୍ବର-୪୩୫୭, ପାଣ୍ଡବ ନଗର, ରୋଡ୍ ନଂ-୨
ଟଙ୍କପାଣି ରୋଡ୍, ଭୁବନେଶ୍ୱର-୭୫୧୦୧୮
ଫୋନ୍- ୯୪୩୮୬୭୬୫୬୭

**ମୁଦ୍ରଣ:**
ଶିକ୍ଷା ପ୍ରକାଶନୀ
ଭୁବନେଶ୍ୱର - ୭୫୧୦୧୫
ସହଯୋଗ ରାଶି-୧୦୦ଟଙ୍କା
ବିକ୍ରିଲବ୍ଧ ସମସ୍ତ ଅର୍ଥ ଆର୍ଯ୍ୟ ଋଷିକୁଳ ବଶିଷ୍ଠ ଯୋଗାଶ୍ରମକୁ ସମର୍ପିତ।

---

# Yaha Hajaideichhi Thare
(Eka Smruti Alekhya)

Written by:-Smt. Satyabhama Biswal
Date of publication:- Shree Gundicha, 2018

**Published by:**
Council of Ability Research and Generation (CARG)
Plot No.-4357, Pandav Nagar, Road No.2
Tankapani Road, Bhubaneswar-751018
Phone:-9438676567

**Printed at:**
Siksha Prakashani, Bhubaneswar-751015

Price: Rs. 100/-

ISBN.81-903828-5-3

# ଉତ୍ସର୍ଗ

ଯେଉଁ ଦୁଇଜଣଙ୍କ ପ୍ରେରଣା ଓ ଐକାନ୍ତିକ ଅନୁରୋଧରେ ଜୀବନର କିଛି ସ୍ମୃତି ଆଜି ଭାଷାରେ ରୂପ ନେଇଛି ସେମାନେ ମୋର ସ୍କୁଲ ଜୀବନର ସହପାଠୀ। ଉତ୍ତର ଜୀବନରେ ଜଣେ ପରମ ଆତ୍ମୀୟ, ଅନ୍ତରଙ୍ଗ ଓ ଆଉ ଜଣେ ଆଧ୍ୟାତ୍ମିକ ସମ୍ପର୍କରେ ସମ୍ପର୍କିତ। ସେହି ଦୁଇଜଣ ଶ୍ରୀ ଅନ୍ତର୍ଯ୍ୟାମୀ ସ୍ୱାଇଁ ଓ ଶ୍ରୀ ବିଜୟ ବରାଳଙ୍କ ଉଦ୍ଦେଶ୍ୟରେ ଏ 'ସ୍ମୃତି ଆଲେଖ୍ୟ'ଟି ଉତ୍ସର୍ଗୀତ।

## ପ୍ରକାଶକୀୟ......

ଅବିଭକ୍ତ କଟକ (ବର୍ତ୍ତମାନ କେନ୍ଦ୍ରାପଡ଼ା) ଜିଲ୍ଲାର ବ୍ରାହ୍ମଣୀ, ବିରୂପା ଓ ଖରସ୍ରୋତା ନଦୀର ମଧ୍ୟବର୍ତ୍ତୀ ଧୋଇଆ ଅଞ୍ଚଳ। ପ୍ରତିବର୍ଷ ଏହି ନଦୀମାନଙ୍କର ବନ୍ୟାଦ୍ୱାରା ଅଞ୍ଚଳଟିର ବ୍ୟାପକ କ୍ଷତି ହୋଇଥାଏ। ଘରଦ୍ୱାର, ଫସଲ, ଧନଜୀବନ ହାନୀ ହୋଇ ଲୋକମାନଙ୍କର ଆଶା ଭରସାର ମେରୁଦଣ୍ଡ ଭାଙ୍ଗିଯାଏ। ଏହିଭଳି ଏକ ଅଞ୍ଚଳରେ ଅବସ୍ଥିତ ଆମ ଗାଁ 'ନାହିଆଡିଆ', ଏକ ଛୋଟ ଗାଁ। ନିପଟ ମଫସଲ। ଯାତାୟାତର ସୁବିଧା ନଥିଲା ସେତେବେଳେ।

ଗାଁଟି ସିନା ସାନ। ମାତ୍ର ଆଜକୁ ପଚାଶ ବର୍ଷ ତଳେ ସେହି ଗାଁର କେତେଜଣ ଯୁବକ ସମାଜ ସଂସ୍କାର ପାଇଁ ଅଣ୍ଟା ଭିଡ଼ିଥିଲେ। ସେମାନେ ସାମ୍ୟବାଦୀ, ପ୍ରଗତିଶୀଳ ଚିନ୍ତାଧାରା ଦ୍ୱାରା ଉଦ୍‌ବୁଦ୍ଧ ହୋଇଥିଲେ। କର୍ଣ୍ଣଧାର ଥିଲେ ପଡ଼ୋଶୀ ଗାଁର ବିପ୍ଳବୀ ସାମ୍ୟବାଦୀ ନେତା ଅଧାପକ ୰ଗୟାଧର ରାଉତ (ସମ୍ପର୍କରେ ମୋର ବଡ଼ବାପା)। ଜାତି, ଜାତକ, ଯୌତୁକ ବିହୀନ ବିବାହ କରିବା ପାଇଁ ଆମ ଗାଁର ଯେଉଁମାନେ ନିଷ୍ପତ୍ତି ନେଇଥିଲେ, ସେମାନେ ହେଲେ ଡଃ କୈଳାସ ଚନ୍ଦ୍ର ଟିକାୟତରାୟ, ୰ଶରତ ଚନ୍ଦ୍ର ବିଶ୍ୱାଳ (ମୋର ବଡ଼ବାପା) ଓ ୰ବୈକୁଣ୍ଠ ବିଶ୍ୱାଳ (ମୋ ବାପା)। ମୋ ବୋଉ ଥିଲା ଓଡ଼ିଶାର ବିଶିଷ୍ଟ ପାଲାଗାୟକ (ଗାୟକ ରତ୍ନ) ହରିନାଥଙ୍କ ଝିଅ। ସରକାରୀ ଚାକିରିର ମୋହ ତ୍ୟାଗ କରି ସ୍ୱାଧୀନ ସାମ୍ବାଦିକତାକୁ ବାପା ଆଦରି ନେଇଥିଲେ ପେଷା ହିସାବରେ। ମାତ୍ର ଦାରୁଣ ଅର୍ଥାଭାବ ତାଙ୍କ ପ୍ରଗତି ପଥରେ ଅନ୍ତରାୟ ହୋଇ ଛିଡ଼ା ହୋଇଥିଲା। ଜୀବନ ଯୁଦ୍ଧରେ ସଂଗ୍ରାମ କରି କରି ଶେଷରେ ଜଣେ ଜିନିୟସ୍ ଅକାଳରେ ଝଡ଼ି ଯାଇଥିଲେ।

ବୋଉ ଥିଲା ଶିକ୍ଷୟିତ୍ରୀ । ଅବସର ନେଲା ପରେ ନିଃସଙ୍ଗତା ସାଙ୍ଗକୁ କର୍ମ ରହିତ ଜୀବନ ତାକୁ ବିଷଣ୍ଣ କରୁଥିଲା । ତା'ର ଦୁଇଜଣ ସହପାଠୀଙ୍କ ଅନୁରୋଧ ଓ ପ୍ରେରଣାରେ ସେ କେତେକ ସ୍ମୃତି ମନେପକାଇ ଲେଖିଛି । ମୁଁ ତାକୁ ପୁସ୍ତକ ଭିତରେ ବାନ୍ଧି ରଖିବାକୁ ଚେଷ୍ଟା କରିଛି ମାତ୍ର । ଉଦ୍ଦେଶ୍ୟ ଏହା ଯେ କାଳେ କେତେବେଳେ ତା' ସ୍ମୃତିରେ ଥିବା ବନ୍ଧୁମାନଙ୍କ ହାତରେ ପୁସ୍ତକଟି ପଡ଼ିଲେ, ସେମାନଙ୍କ ସ୍ମୃତି ଚାରଣରେ ଏହା ସହାୟକ ହେବ ।

ଚେତନା ବିଶ୍ୱାଳ
Director(CARG)

*ପାଠକୀୟ ମନ୍ତବ୍ୟ....*

# ମୋ କଥା

ବଡ଼ ଭଉଣୀ ତଥା ସହକର୍ମୀ ଶ୍ରୀମତୀ ସତ୍ୟଭାମା ନାଥଶର୍ମା (ବିଶ୍ୱାଳ)ଙ୍କ ଲିଖିତ ଅତୀତର ସ୍ମୃତିକଥା "ଯାହା ହଜାଇ ଦେଇଛି ଥରେ" ପାଣ୍ଡୁଲିପି ପଢ଼ିଲି। ବେଶ୍ ଭଲ ଲାଗିଲା। ବୁଢ଼ା ବୟସରେ ପିଲାଦିନର ଅନେକ କଥା ଛାଇ ଆଲୁଅ ପରି ମନେପଡ଼େ। ମନ ଓ ପ୍ରାଣକୁ ଶୀତଳ କରେ। ନିଃସଙ୍ଗ ଜୀବନ, ଜରାଜୀର୍ଣ୍ଣ ଶରୀର, ରୋଗ ବ୍ୟାଧିରେ ପୀଡ଼ିତ ହେଇ ସ୍ନେହ କାଙ୍ଗାଳ ମଣିଷଟି ପାଲଟିଯାଏ ବୁଢ଼ାହଡ଼ା। ସମୟ କାଟିବା ପାଇଁ ଗପସପ, ଲେଖାଲେଖି, ବୁଲାବୁଲି କରିବାକୁ ପସନ୍ଦ କରେ। ତାହାହିଁ ପ୍ରତିଫଳିତ ହୋଇଛି କବୟିତ୍ରୀଙ୍କ କବିତା ମାଧ୍ୟମରେ।

ପୂଜ୍ୟ ଗୁରୁଦେବଙ୍କ ଶୁଭାଶିଷ ପ୍ରାପ୍ତ ଏହି ମହିୟସୀ ସାରସ୍ୱତ ସାଧିକାଙ୍କ ସାଧନା ନିଶ୍ଚିତ ପାଠକୀୟ ଆଦର ଲାଭ କରିବ ବୋଲି ଆଶା ଓ ବିଶ୍ୱାସ।

**କାର୍ତ୍ତିକ ଚନ୍ଦ୍ର ଦାସ**
ଅବସର ପ୍ରାପ୍ତ ଶିକ୍ଷକ
ପ୍ରତାପ ଶାସନ ଉଚ୍ଚ ବିଦ୍ୟାଳୟ,
ବାଲକାଟି, ଖୋର୍ଦ୍ଧା

# ହୃଦୟର କଥା

ମୋର ପରମ ଶ୍ରଦ୍ଧାସ୍ପଦା, ବାନ୍ଧବୀ ତଥା ସହକର୍ମୀ ଶ୍ରୀମତୀ ସତ୍ୟଭାମା ନାଥଶର୍ମା (ବିଶ୍ୱାଳ)ଙ୍କର ଅନୁଭୂତିନିଷ୍ପନ୍ନ ପୁସ୍ତକଟି "ଯାହା ହଜାଇ ଦେଇଛି ଥରେ"ପଢ଼ି ଖୁସି ହେଲି। ଲେଖାଗୁଡ଼ିକ ଭାଷା, ଭାବ ଓ ଶୈଳୀଦୃଷ୍ଟିରୁ ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଛି। କବିତାବଳି ମଧ୍ୟରୁ "କଳାରଙ୍ଗର ମହତ୍ତ୍ୱ" କବିତାଟି ମୋ ହୃଦୟକୁ ଏତେମାତ୍ରାରେ ସ୍ପର୍ଶ କରିଛି ଯେ ତାହା ବର୍ଣ୍ଣନା କରିବା ପାଇଁ ମୋର ଭାଷା ନାହିଁ। ଅବସର ଜୀବନରେ ଅସୁସ୍ଥତା ସତ୍ତ୍ୱେ ଅତୀତର ନିଛକ ସତ୍ୟକୁ ମନେପକାଇ ଅତି ସୁନ୍ଦରଭାବରେ ସେ ପ୍ରକାଶ କରିଛନ୍ତି ତାଙ୍କ ସ୍ମୃତି ଆଲେଖ୍ୟରେ। ମୋ ଠାରୁ ବୟସରେ ସାନ ହେଲେ ମଧ୍ୟ ତାଙ୍କର ବିଭୁଦତ୍ତ ଲୁକ୍କାୟିତ ପ୍ରତିଭା ନିକଟରେ ମୋ ମୁଣ୍ଡ ଆପେ ଆପେ ନଇଁଯାଉଛି। ଈଶ୍ୱରଙ୍କ ନିକଟରେ ତାଙ୍କର ଦୀର୍ଘ ନିରାମୟ ଜୀବନ କାମନା କରୁଛି ଏବଂ ଲେଖନୀ ଚାଳନା ଅବ୍ୟାହତ ରହିବାକୁ ଆଶା ରଖୁଛି। ।

**ପ୍ରମୋଦିନୀ ପଟ୍ଟନାୟକ**

ଅବସରପ୍ରାପ୍ତ ପ୍ରଧାନ ଶିକ୍ଷୟିତ୍ରୀ
ହରିହର ବିଦ୍ୟାପୀଠ
ଭୁବନେଶ୍ୱର

## ଆରମ୍ଭରେ ପଦେ:-

"ଦେବୀ ବୀଣାପାଣି କେଉଁ ପାପ ଫଳେ

କରୁଣା ତୋହର ଊଣା ଏ ଉତ୍କଳେ।"

କବିବର ରାଧାନାଥ ଅଭିଯୋଗ ଜଣାଇଥିଲେ ମା' ସରସ୍ୱତୀଙ୍କ ଚରଣରେ ଓଡ଼ିଆ ଭାଷାର ବିକାଶ ପାଇଁ। ମୋର କିନ୍ତୁ ପ୍ରାର୍ଥନା ନିମ୍ନମତେ:-

"ଦେବୀ ବୀଣାପାଣି କେଉଁ ପାପଫଳେ

କରୁଣା ତୋହର ଊଣା ମୋ କପାଳେ।"

ଦୀର୍ଘ ୩୫ ବର୍ଷ ଜଣେ ଶିକ୍ଷୟିତ୍ରୀ ଭାବେ ଜୀବନ ବିତାଇ ଥିଲେ ମଧ୍ୟ ଦିନେ ହେଲେ ଦିପଦ ଲେଖିବାକୁ ସାହସ କରି ନାହିଁ କି ସେ ପ୍ରକାର ପ୍ରେରଣା ଅନ୍ତରରେ ଅନୁଭବ କରିନାହିଁ। ଅଷ୍ଟମ ଶ୍ରେଣୀରେ 'ଜୟହିନ୍ଦ୍' ହାଇସ୍କୁଲରେ ପଢ଼ିଲାବେଳେ ଏକ କ୍ଷୁଦ୍ର କବିତା 'ଶରଦଶଶୀ' ସ୍କୁଲ ମାଗାଜିନ୍, 'ପଲ୍ଲୀପ୍ରଭା'ରେ ମୋ ନାଁରେ ପ୍ରକାଶିତ ହୋଇଥିଲା। କବିତାଟି ପଢ଼ି ସାଙ୍ଗସାଥୀ, ସହପାଠୀଗଣ ଖୁସି ହେଉଥିଲା ବେଳେ ମୁଁ ଖୁସି ହୋଇ ପାରି ନଥିଲି। କାରଣ କବିତାଟି ମୋ ନିଜସ୍ୱ ରଚନା ନଥିଲା। ମୋ ସାନଭଉଣୀ ସୁଷମା ଅଳି କଲାରୁ ବାପା ମୋ ପାଇଁ ଲେଖି ଦେଇଥିଲେ। ମୋ ଝିଅ ଚେତନା ୨୦୦୬ ମସିହାରେ ତା ବାପାଙ୍କ ଉଦ୍ଦେଶ୍ୟରେ ଏକ ସ୍ମରଣିକା ପୁସ୍ତକ ଛପାଇଥିଲା। ସେଥିରେ ଲେଖାଟିଏ ଦେବାକୁ ଶ୍ରୀ ନୃସିଂହ ଚରଣ ସାହୁ, ସମ୍ପାଦକ, 'ଆମେ ଓଡ଼ିଆ' (ମୋର ଜ୍ୟେଷ୍ଠ ଭ୍ରାତୃ ପ୍ରତିମ) ମୋତେ କହିଥିଲେ। ସେତେବେଳେ ମଧ୍ୟ ମୋ କଲମ ନିରବ ଥିଲା। ସେମିତି ଆବେଗର ସ୍ଫୁରଣ ଅନ୍ତରରେ ଘଟି ନଥିଲା। ମାତ୍ର ସେ ଦିବ୍ୟ ପ୍ରେରଣାର ଅନୁଭବ ମିଳିଥିଲା ଯେତେବେଳେ ପରମ ପୂଜ୍ୟ ଗୁରୁଦେବଙ୍କ ସମ୍ପର୍କରେ

ଏକ ଅନୁଭୂତି ସଂକଳନ 'ଅନନ୍ୟ ଗୁରୁ ଶ୍ରୀ ଜୟଦେବ ବ୍ରହ୍ମଚାରୀ' ପ୍ରକାଶିତ ହେଲା ୨୦୧୭ ନଭେମ୍ବର ୨୭ ତାରିଖରେ। ସେଥିରେ ବର୍ଣ୍ଣିତ ମୋ ଜୀବନର କିଛି ଅନୁଭୂତି ହୃଦୟକୁ ଛୁଇଁଛି ବୋଲି କେତେ ଜଣ ବନ୍ଧୁ ଓ ସମ୍ପର୍କୀୟଙ୍କ ଠାରୁ ଶୁଣିଲି। ସେଇ ଭରସାରେ ଆଜି ମୋର ସହପାଠୀ ବନ୍ଧୁ ଦୁଇଜଣ ଶ୍ରୀ ବିଜୟ ବରାଳ ଓ ଶ୍ରୀ ଅନ୍ତର୍ଯ୍ୟାମୀ ସ୍ୱାଇଁଙ୍କ ପ୍ରେରଣାରେ କଲମ ଧରିଛି, ଅତିକ୍ରମି ଆସିଥିବା ଜୀବନର କିଛି ସ୍ମୃତି ଗୋଟାଇବାକୁ। ଆଶା ରଖୁଛି ମୋ ପୁଅ, ଝିଅ, ଭଉଣୀମାନେ ଓ ମୋତେ ଜାଣିଥିବା ଚିହ୍ନିଥିବା ବନ୍ଧୁମାନଙ୍କୁ ଏହା କିଛି ଅଂଶରେ ପ୍ରଭାବିତ କରିବ।



# ସୂଚୀ



## (କବିତାଞ୍ଜଳି)

# ଚଣ୍ଡିଆଗଡ଼ି

ଜନ୍ମ ତାରିଖ ଜଣା ନାହିଁ। ଜନ୍ମସ୍ଥାନକୁ ଆବିଷ୍କାର କଲି ଚଣ୍ଡିଆଗଡ଼ି ଗାଁରେ ଥିବା ଛୋଟ ଏକ ମାଟି କାନ୍ଥରେ କଉଡ଼ି ଖଞ୍ଜାକୁ ଦେଖି। ଚଣ୍ଡିଆଗଡ଼ି ମୋର ମାମୁଁଘର ଗାଁ। ତେନ୍ତୁଳି, ବଉଳ, ଆମ୍ବତୋଟା ପରିବେଷ୍ଟିତ ଛୋଟ ଗାଁଟିଏ। ଗାଁକୁ ଲାଗି ବହିଯାଇଛି ଜୁଆରିଆ ଛୋଟ ନଈ ଧାରଟିଏ; ଯାହା 'ଆହାର' ନାମରେ ପରିଚିତ। ଗାଁଟିର ପ୍ରାକୃତିକ ଶୋଭା ଅନନ୍ୟ।

ଅତୀତ ସର୍ବଦା ଦୁଃଖ ଦେଇଥାଏ ଯେତେ ହୋଇଥାଉ ମଧୁମୟ,

ତଥାପି କାହିଁକି ଅନ୍ତରଖୋଜଇ ସ୍ମୃତି ଗନ୍ତାଘରୁ ସ୍ମୃତି ଅକ୍ଷୟ।

ଚଣ୍ଡିଆଗଡ଼ି ମୋ ପାଇଁ ଏକ ସ୍ମୃତି ମାଲ୍ୟ। ଏଇଠି କଟିଥିଲା ମୋର କୈଶୋର। ଏଇ ଛୋଟ ଗାଁଟିରେ ଅନୁଭବ କରିଥିଲି ପ୍ରକୃତିର ମନୋରମ ସତ୍ତାକୁ। ବାଉଁଶ କୁଞ୍ଜ, ଆମ୍ବତୋଟା ଘେରା ଆହାର କୂଳ ଥିଲା ମୋ ପାଇଁ ଅହେତୁକ ଆକର୍ଷଣ। ମୋର ମାମୁଁଘର ବସ୍ତିଟି 'ବୈଦ୍ୟସାହି' ନାମରେ ପରିଚିତ ଥିଲା। ମୁଁ ରହୁଥିଲି ମା (ମୋ ଆଈ)ସାଙ୍ଗରେ ଏକୁଟିଆ। ବୈଦ୍ୟ ସାହିକୁ ପ୍ରବେଶ ପଥରେ ଥିଲା ସୁଶୀତଳ ଛାୟା ପ୍ରଦାନକାରୀ ଦୁଇଟି ବିରାଟ ବଉଳ ଗଛ। ଚଣ୍ଡିଆଗଡ଼ିର ଭୂମି ରୂପ ନିଷ୍ଠୁର କର୍କଶ ମଟାଳ ମାଟି ନଥିଲା, ଥିଲା ସୁକୋମଳ ବାଲିଶେଯ। ଅତି ପ୍ରତ୍ୟୁଷରୁ ଉଠି ମୁଁ ଚାଲି ଯାଉଥିଲି ସେହି ବଉଳ ଗଛ ମୂଳକୁ। ସେଇଠି ବାଲିରେ ଘର କରି ବଉଳଫୁଲରେ ଘର ସଜାଡ଼ିବାରେ ଅତ୍ୟନ୍ତ ଆନନ୍ଦ ପାଉଥିଲି। ଗୋଧୂଳି ଲଗ୍ନରେ ଆମ୍ବ ଡାଳରେ ଡାହାଣିଆ ଖରା ଲୁଚକାଳି ଖେଳିଲେ ସାଥୀ ମେଳରେ ଚାଲି ଯାଉଥିଲି ଆହାର କୂଳକୁ। ଛୋଟ ଜୁଆରିଆ ଧାରଟିଏ ଆହାର। ତା କୂଳରେ ଥିଲା ଆମ୍ବତୋଟା, ବାଉଁଶବଣ। ଗାଧୁଆ ତୁଠର ଠିକ୍ ଉପରକୁ ଥିଲା ଏକ ବଡ଼ ବରଗଛ। ତାକୁ ଲାଗିଥିଲା ବିସ୍ତୀର୍ଣ୍ଣ ଚାରଣ ପଡ଼ିଆ (ଗୋଚର)। ସେଥିରୁ କିଛି ଅଂଶ ବୈଦସାହିଆଙ୍କର ସମାଧି ସ୍ଥଳ ରୂପେ ବ୍ୟବହୃତ ହେଉଥିଲା।

ସ୍ମୃତିରେ ଭାସି ଉଠନ୍ତି ଖେଳସାଥୀ ପ୍ରେମା, ଚଞ୍ଚଳା ନାନୀ। ବୟସରେ ସାମାନ୍ୟ ବଡ଼ ସୀତାନାନୀ। ଗୋଧୂଳି ନଇଁଲେ ଆମେ ଚାଲି ଯାଉଥିଲୁ ସେହି

ଗୋଚର ପଡ଼ିଆକୁ ଝାଡ଼ା ଯିବାର ବାହାନା କରି। ଉଦ୍ଦେଶ୍ୟ ଥିଲା ଆହାର କୂଳେ ବୁଲିବା ଏବଂ ତାର ପାଣି ଧାରରେ ଚବର ଚବର ହୋଇ ଲୁଗାପଟା ଧୋଇ ଘରକୁ ଫେରିବା। ମନେ ପଡ଼ି ଯାଉଛି ଛୋଟ ଛୋଟ ଗାଈଆଳ ପିଲାମାନଙ୍କର ଆମକୁ ଛିଗୁଲେଇବା ପାଇଁ ସିନେମା ସଙ୍ଗୀତ, ଯାତ୍ରା ସଙ୍ଗୀତ ଗାନ "ଆଜି ଆକାଶେ କି ରଙ୍ଗ ଲାଗିଲା, ରଜା ଝିଅ ସୁକୁମାରୀ, ବାରହାତ ବେଣୀ ପାରି ଶଙ୍ଖ ମଲମଲ ଛାତେ ଚାହିଁଲା, ଫେରି ଅନା ନାଗୁଣୀ ଫେରି ଅନାଲୋ ବାଜିଲାଣି ନାଗେଶ୍ୱରୀ ବାଜଣା।"

ସେମାନଙ୍କୁ ପ୍ରତ୍ୟୁତ୍ତର ଦେବା ପାଇଁ ଆମର ପରୋକ୍ଷ ଢମାଳି - "ଫୁଲ ହୋଇଛିକି ନାଇବୁ, ଫଳ ହୋଇଛି କି ଖାଇବୁ, ଅନେଇ ଅନେଇ ରହିବୁ।"

ସ୍ମୃତି ଏକ ତରଳ ପ୍ରଜାପତି। ଏଇଠି ଥାଏ ପୁଣି ଏଠି ନଥାଏ। ଖିଅରୁ ଖିଅ ଧରି ଉଡ଼ି ବୁଲୁଥାଏ। ଆଖିରେ ନାଚି ଯାଉଛି ରାଜରାସ୍ତା କଡ଼ରେ ଉଭା ହୋଇଥିବା ଉଚ୍ଚ ପ୍ରାଇମେରୀ ସ୍କୁଲଟି। ସମ୍ମୁଖ ଭାଗଟି ବାଉଁଶବତା ବାଡ଼ରେ ଆବଦ୍ଧ। ପଛପଟେ ଲେଙ୍କଡ଼ କରଙ୍କ ଧାନ କ୍ଷେତ ଓ କାଜୁ ବଗିଚା। ପଶ୍ଚିମପଟେ ଶିବାଳୟରେ ପୂଜିତ ବନା ମହାଦେବ ଓ ପୂର୍ବପଟେ ଛୋଟ ଏକ ଟୁବି ଗଡ଼ିଆ। ରାସ୍ତା ଆରକଡ଼ରେ ଗଙ୍ଗା ନନାଙ୍କର ବାଡ଼ ଘେରା ବିରାଟ ବିସ୍ତୃତ ବାଡ଼ି। ଗଙ୍ଗାନା ମୋର ଗୋଟିଏ କିମ୍ବା ଦୁଇଟି ଉପର କ୍ଲାସରେ ପଢୁଥିଲେ। ପରେ ଭଦ୍ରକ କଲେଜରେ ତାଙ୍କ ସହ ଦେଖା ହୋଇଥିଲା। ହିଷ୍ଟ୍ରି ଅନର୍ସ ନେଇ ପଢୁଥିଲେ। ପରେ ଶୁଣିଲି ରାଜଗାଙ୍ଗପୁର ଓ.ସି.ଏଲ୍.ରେ ଚାକିରି କରିଛନ୍ତି। ସ୍କୁଲରେ ଥାଆନ୍ତି ଫକୀର ସାର୍, ଉମାକାନ୍ତ ସାର୍, କାମଦେବ ସାର୍। ପୂଜ୍ୟ ଶିକ୍ଷକମାନଙ୍କ ଉଦ୍ଦେଶ୍ୟରେ ଆଜି ଦୂରରୁ ଭକ୍ତିପୂତ ପ୍ରଣାମ ନିବେଦନ କରୁଛି। ମନେପଡୁଛି ସହପାଠୀମାନଙ୍କର କିଶୋର ଅବସ୍ଥା ଓ କୈଶୋରର ଚପଳତା। ଯେଉଁମାନଙ୍କ ଚେହେରା ମୋ ସ୍ମୃତିପଟରେ ଭାସି ଉଠୁଛି ସେମାନେ ହେଲେ ଅଚ୍ୟୁତାନନ୍ଦ ରାଉତ, ସୁଧାକର କର, ଭାଗବତ ପାଣି, ବିଦ୍ୟାଧର ସାହୁ, ନିରଞ୍ଜନ ସାହୁ, ହରି ଷଣ୍ଢ, ଗୟାଧର, ଦୁଃଖିଶ୍ୟାମ ଦାସ, ଘନଶ୍ୟାମ ଦାସ ଇତ୍ୟାଦି। ଏମାନଙ୍କ ସାଙ୍ଗରେ ପୁଅ ଝିଅ ଭେଦ ଭୁଲି ଅତି ନିବିଡ଼ ଭାବରେ ମିଶି ଯାଇଥିଲି। ଦିନଗୁଡ଼ିକ ଏତେ ଆନନ୍ଦଦାୟକ ଓ ମଧୁମୟ ଥିଲା ଯେ ବର୍ତ୍ତମାନର ଜୀବନ ମନେପକାଇଲେ ସେ ଆନନ୍ଦର ଏକ ସହସ୍ରାଂଶ ମଧ ତୁଳନୀୟ ନୁହେଁ। ସ୍ମୃତି ତ ଅଙ୍ଗେ ନିଭେଇଥିବା ଅନୁଭୂତି। ଯାହା ମନେପଡୁଛି ବୋଧହୁଏ, ପଞ୍ଚମ ଶ୍ରେଣୀରେ ପଢ଼ିଲା ବେଳର କଥା। ଭାଗବତର ବ୍ରତଘର ଶେଷ ହୋଇଥାଏ। ମୋର ଚଗଲା ମନରେ କି ଖିଆଲ ପଶିଲା କେଜାଣି ମୁଁ ତାକୁ ଜିଗର ଲଗାଇଲି

ସେ କ'ଣ ମନ୍ତ୍ର ଶିଖିଛି ମୋତେ କହିବାକୁ। ଶେଷରେ ସେ ବିବଶ ହୋଇ ମୋତେ ଏକ ମନ୍ତ୍ର କହି ଦେଇଥିଲା। ମନ୍ତ୍ରଟି ଏହିପରି-

"ଓଁ ତଦବିଷ୍ଣୁ ପରମପଦ ସଦା ପଶ୍ୟନ୍ତି ସୁରୟଃ

ଦିବିବ ଚକ୍ଷୁରାତତଃ.........................।

ଆଉ ମୋର ମନେ ନାହିଁ। ଆଜି ପ୍ରାୟ ଷାଠିଏ ବର୍ଷ ପରେ ମୋର ଭାଗବତକୁ ଭେଟି ବାଲ୍ୟସଖାରୁ ମନ୍ତ୍ରଦାତାର ସମ୍ମାନ ଦେବାକୁ ଇଚ୍ଛା ହେଉଛି। ଜାଣେନା ଏ ଜନ୍ମରେ ତା ସମ୍ଭବ ହେବ କି ନାହିଁ। ସୁଧାକର ସାଙ୍ଗରେ ଭଦ୍ରକ କଲେଜରେ ଥରେ ଦେଖା ହୋଇଥିଲା। ଜୁଲଜି ଅନର୍ସ ନେଇ ପଢ଼ିବାର ମନେ ପଡୁଛି। ପରେ ଜାଣିବାକୁ ପାଇଥିଲି ଭିତରକନିକାରେ କୁମ୍ଭୀରମାନଙ୍କର ଜୀବନଶୈଳୀ ଉପରେ ସେ ଗବେଷଣାରତ। ଶ୍ରୀ ଅଚ୍ୟୁତାନନ୍ଦ ରାଉତ ସହପାଠୀ ହେଲେ ମଧ୍ୟ ମୋ ପାଇଁ ସେ ଏକ ସ୍ୱତନ୍ତ୍ର ସମ୍ମାନର ଅଧିକାରୀ। ମୋତେ ତାଙ୍କ ଭଉଣୀର ମର୍ଯ୍ୟାଦା ଦେଇଛନ୍ତି। ବର୍ତ୍ତମାନ ସେ ପଟ୍ଟାମୁଣ୍ଡାଇରେ ସ୍ଥାୟୀ ଭାବରେ ଅବସ୍ଥାନ କରୁଛନ୍ତି ଏବଂ ଠାକୁର ଶ୍ରୀ ଅଭିରାମ ପରମହଂସ ଦେବଙ୍କ ସେବାରେ ନିଜକୁ ସମର୍ପଣ କରିଛନ୍ତି। ଆଶା ବାନ୍ଧିଛି ଠାକୁର ତାଙ୍କ ସହିତ ଅନ୍ତତଃ ଥରେ ମୋ ଭେଟ କରାଇବେ।

ଗୟାଧର ଉପରେ ଅଶରୀରୀ ସବାର ହେବା ଏକ ଅଭୁଲା ଅନୁଭୂତି। ଗୟାଧର ମୋର ସହପାଠୀ। ସେତେବେଳେ ଆମେ ସବୁ ସ୍କୁଲ ଛୁଟି ହେବା ପରେ ଘରକୁ ଯାଇ ପୁଣି ସନ୍ଧ୍ୟାବେଳେ ପଢ଼ିବା ପାଇଁ ସ୍କୁଲ ଆସୁଥିଲୁ। କାରଣ ପଞ୍ଚମ ଶ୍ରେଣୀର ପରୀକ୍ଷା ଥିଲା କମନ୍ ପରୀକ୍ଷା। ଗୟାଧର ଘର ବୋଧହୁଏ ଦୂର ଗାଁ ସିଙ୍ଗିରୀରେ। ତେଣୁ ସେ ସନ୍ଧ୍ୟାରେ ଆସିଲେ ପଢ଼ିସାରି ସ୍କୁଲରେ ରହୁଥିଲା। ସେଦିନ ଗୟାଧର ସନ୍ଧ୍ୟା ବେଳେ ସ୍କୁଲ ଆସି ଗୋଟିଏ ଘର କଣରେ ଚୁପ୍ ଚାପ୍ ବସିଥିଲା। କାହାରି ସାଙ୍ଗରେ କିଛି କଥା କହୁ ନଥିଲା। ତା'ର ଅଦ୍ଭୁତ ଆଚରଣ ଦେଖି କାମଦେବ ସାର୍ ବାଲିକୁ ମନ୍ତ୍ର କରି ଗୟାଧର ଉପରେ ଫିଙ୍ଗିବାରୁ ଗୟାଧର ଚିହିଁକି ଉଠି କହିଥିଲା "ମୁଁ ଭାବବୋଉ, ସେ ଏକୁଟିଆ ଆସୁଥିବାର ଦେଖି ତା' ସାଙ୍ଗରେ ଚାଲି ଆସିଲି।" ତା'ପରେ ସାର୍ ଆଉ କ'ଣ ସବୁ ମନ୍ତ୍ର ପଢ଼ିବାରୁ ଗୟାଧର ଝାଡୁମୁଠା ଦାନ୍ତରେ ଧରି ରାଜରାସ୍ତାରେ ଦୌଡ଼ିଲା ଏବଂ ଅଧବାଟରେ ପଡ଼ି ଯାଇଥିଲା। ସାଥୀମାନେ ତାକୁ ପାଣିରେ ପୋଛାପୋଛି କରି ସ୍ୱାଭାବିକ୍ ଅବସ୍ଥାକୁ ଫେରାଇ ଆଣିଥିଲେ। ଭୂତ, ପ୍ରେତଙ୍କ ସମ୍ବନ୍ଧରେ ଅତି ରୋଚକ କାହାଣୀ

ପିଲାବେଳେ ଶୁଣିଥିଲେ ମଧ୍ୟ ଗୟାଧରର ଉପରେ ତାର ପ୍ରଭାବ ଥିଲା ଏକ ପ୍ରତ୍ୟକ୍ଷ ଅନୁଭୂତି।

ଚଣ୍ଡିଆଗଡ଼ିର ପରିବେଶ, ତାର ପ୍ରାକୃତିକ ଶୋଭା ସମ୍ଭାରକୁ ମନେ ପକାଇଲେ ହୃଦତନ୍ତ୍ରୀରେ ଏକ ଅଦ୍ଭୁତ ଆଲୋଡ଼ନ ସୃଷ୍ଟି ହୁଏ। ମାତ୍ର ତାକୁ ଭାଷାରେ ରୂପ ଦେବାର ଶକ୍ତି ପରମେଶ୍ୱରୀ ମା' ବାଗ୍‌ଦେବୀ ମୋତେ ଦେଇ ନାହାନ୍ତି। ସୃଜନୀ ଶକ୍ତି ନଦେଲେ ନାହିଁ ଅନ୍ତରର ପ୍ରାର୍ଥନା ସ୍ୱୀକାର କରିବା ପାଇଁ ତାଙ୍କ ଚରଣ ତଳେ ମୋର ନିବେଦନ।

"ଆସ ଦେହେ ଆସ ପ୍ରାଣେ<br>
ଆସ ମା' ଅନ୍ତର ଧ୍ୟାନେ<br>
ମଙ୍ଗଳ ଭାବନା ହୃଦେ ଆଣ ସତ୍ୱର<br>
ଦିଅ ସାଧନାରେ ବଳ ଉତ୍ସାହ ଶକ୍ତି ପ୍ରବଳ<br>
କର ଆତ୍ମା ସୁ ନିର୍ମଳ ସତ୍ୟ ସୁନ୍ଦର<br>
ପଦ ସେବା ଯୋଗ୍ୟତା ତବ<br>
ପ୍ରଦାନ ଗୋ ଦେବି ନିତ୍ୟ ପୁଣ୍ୟ ବିଭବ।"

*'ବାଣୀ ଆବାହନ' କବି ✓ଚିନ୍ତାମଣି ମହାନ୍ତି*

ମା'ର ସ୍ୱର୍ଗବାସ ପରେ ଚଣ୍ଡିଆଗଡ଼ି ମୋଠାରୁ ବହୁତ ଦୂର।



# ପିଲାବେଳ

ପିଲାବେଳ କଟିଥିଲା ତରଡ଼ିପାଳରେ। ପିଲାଦିନର ଚେତନା ଯେମିତି ଅପରିପକ୍ୱ, ସ୍ମୃତି ମଧ୍ୟ ସେମିତି ଝାପ୍ସା। ସଞ୍ଜ ହେଲେ ଆମେ ପିଲା ଦଳ ଘେରି ବସୁ ମୋ ଦାଦା (ଶ୍ରୀ ଧରଣୀଧର ନାଥଶର୍ମା)ଙ୍କୁ। ସେ ଅତ୍ୟନ୍ତ ସରଳ, ନିଷ୍କପଟ ଓ ଶିଶୁବତ୍ସଳ। ଜିଗର ଲାଗେ ଭୂତ ପ୍ରେତ ଗପ ଶୁଣିବାକୁ। ଦାଦା ଆରମ୍ଭ କରନ୍ତି ତାଙ୍କ ବାପା (ମଣିନାଥ)ଙ୍କ ଅଙ୍ଗେ ନିଭା କାହାଣୀ। ତରଡ଼ିପାଳ ବିଶ୍ୱାଳ ସାହିରୁ ସଙ୍ଗୀତ ଆସର ଶେଷ କରି ନିଶାର୍ଦ୍ଧରେ ସେ ଯେତେବେଳେ ଘରକୁ ଫେରନ୍ତି, ବାଟରେ ତାଙ୍କୁ ବ୍ରହ୍ମ ରାକ୍ଷସ ବାଟ ଓଗାଳେ। ସଡ଼କ କଡ଼ରେ ଥିବା ବଡ଼ ବଡ଼ ବରଗଛ, ମୁଚୁକୁନ୍ଦ ଗଛ ମଧ୍ୟରୁ ଗୋଟିଏ ବରଗଛର ନାଁ 'କାନମୋଡ଼ା' ବରଗଛ। ସେ ଗଛର ପତ୍ର ଡେମ୍ଫ ପାଖରୁ ଦୁଇ କଡ଼କୁ ଅଧା ମୋଡ଼ି ହୋଇ ରହିଥାଏ। ସେହି ବରଗଛରୁ ଝର ଝର ହୋଇ ବ୍ରହ୍ମରାକ୍ଷସ ଓହ୍ଲାଇ ଆସି ମଣିନାଥଙ୍କୁ ବାଟ ଓଗାଳେ। ସେ ବଡ଼ପାଟିରେ ତାଙ୍କ ପୁଅମାନଙ୍କୁ ଡାକ ପକାନ୍ତି, ନରିରେ, ହରିରେ, ଧରିରେ ଦୌଡ଼ି ଆସ ରାକ୍ଷସ ବୁଢ଼ା ମୋତେ ବାଟ ଛାଡୁନାହିଁ। ଏମାନେ ସବୁ ଠେଙ୍ଗା ବାଡ଼ି ଧରି ଗଲେ ରାକ୍ଷସ ଅଦୃଶ୍ୟ ହୋଇଯାଏ ଓ ପୁଅମାନଙ୍କ ସାଙ୍ଗରେ ବାପା ଘରକୁ ଆସନ୍ତି।

ବର୍ତ୍ତମାନ ଚିନ୍ତା କଲେ ଏ କାହାଣୀ ହାସ୍ୟାସ୍ପଦ ମନେ ହେଲେ ମଧ୍ୟ ସେତେବେଳେ ଚପଳ ଶିଶୁମନକୁ ଏକାଗ୍ର କରିବାରେ ଦାଦାଙ୍କର ବର୍ଣ୍ଣନା ଚାତୁରୀ ଥିଲା ଅତି ମନୋରମ। ଆଉ ଏକ ଘଟଣା ମନେପଡୁଛି। ଏହା ମୋର ଜୀବନ ମୃତ୍ୟୁର ସନ୍ଧି ଅବସ୍ଥା। ଆମଘର ଡିହ ତଳକୁ ସଡ଼କକୁ ଲାଗି ମୋଟା ମୋଟା ଲମ୍ୱା ଶାଳ କାଠଗଣ୍ଡି କେତୋଟି ପଡ଼ି ରହିଥାଏ। ବୋଧହୁଏ ଘର ତିଆରି ପାଇଁ ଅଣା ହୋଇଥିବ। ସେହି କାଠଗଣ୍ଡି ଉପରେ ଖେଳୁ ଖେଳୁ କେମିତି କେଜାଣି ମୋ ମୁଣ୍ଡ ଦୁଇଟି ଗଣ୍ଡି ମଝିରେ ତଳକୁ ଚାଲି ଯାଇଥିଲା। ବୋଧହୁଏ କିଛି ଖେଳ ଜିନିଷ ତଳୁ ଉଠାଉ ଉଠାଉ ଏହା ହୋଇଥିବ। ମୁଣ୍ଡ ଆଉ କୌଣସି ପ୍ରକାରେ ବାହାରିଲା ନାହିଁ। ତଳମୁହାଁ ହୋଇ ମୋର ବିକଳ ଚିତ୍କାର ମୋ ବୋଉକୁ ଅତି ଦୁଃଖିତ

କରିଥାଏ।ସେ କାନ୍ଦୁଥାଏ। ଲୋକ କେତେଜଣ ଜମା ହୋଇଥାନ୍ତି। କାହାରି ମୁଣ୍ଡରେ କିଛି ବୁଦ୍ଧି ପଶୁ ନଥାଏ। ଏହି ସମୟରେ 'ପାଶୁରୀ ମା' ବୋଲି ଜଣେ ସ୍ତ୍ରୀଲୋକ ସେଠି ଆସି ପହଞ୍ଚିଲେ। ସେ ଗାଁ ଗାଁ ବୁଲି ମାଛ ବିକ୍ରୀ କରନ୍ତି। ମୋ ବୋଉକୁ ସହୀ ବୋଲି ଡାକନ୍ତି। ତାଙ୍କ ନିର୍ଦ୍ଦେଶରେ କାଠଗଡ଼ଗୁଡ଼ିକୁ ଧୀରେ ଧୀରେ ଘୁଞ୍ଚାଇବାରୁ ମୋ ମୁଣ୍ଡ ବାହାରି ଆସିଲା। ମୋ ବୋଉ କହିଲା, ମା ଜଗଜ୍ଜନନୀ ପାଶୁରୀ ମା ବେଶରେ ଆସି ବାଟ ଦେଖାଇଲେ।

ପରବର୍ତ୍ତୀ ସମୟରେ ଜୀବନ ଯନ୍ତ୍ରଣାରେ ଜର୍ଜରିତ ହୋଇ ମୁଁ କେତେଥର ଭାବିଛି ମୋ ବୋଉର ଅନୁମାନ ଯଦି ସତ ହୋଇଥାଏ, ତାହେଲେ ମୋ ଭଳି ଜଣେ ଅକିଞ୍ଚନର ଜୀବନ ବଞ୍ଚାଇବାରେ ମହାମାୟାଙ୍କ ସୃଷ୍ଟିର କି ଉଦ୍ଦେଶ୍ୟ ସାଧିତ ହେଲା ?

"ଯା ମାୟା ଦେବେ ଅଗୋଚର,
ମୁଁ ଛାର କେତେକ ମାତର।"

ମନେପଡୁଛି ନିଛାଟିଆ ବିଲ ମଝିରେ ଠାକୁରାଣୀମାଳ। ଗ୍ରାମ ଦେବତୀ ମା ରଡ଼ଙ୍ଗାଙ୍କର ବିଜେସ୍ଥଳୀ। ମନ୍ଦିର ସମ୍ମୁଖରେ ପାଦଚଲା ରାସ୍ତା ଲମ୍ବି ଯାଇଛି ଶାସନ ଗାଁ ଭିତରକୁ। ଭଦ୍ରକ କଲେଜରେ ପଢ଼ିଲାବେଳେ ଏଇ ରାସ୍ତାରେ କେତେଥର ଦାଦାଙ୍କ ସାଙ୍ଗରେ ଚାଲି ଚାଲି ଯାଇଛି ବାଳମୁକୁଳିରେ ବସ୍ ଧରିବାକୁ। ଏଇବାଟେ କେତେଥର ଭାଇ ଶ୍ରୀ ସୁରେଶ ଚନ୍ଦ୍ର ନାୟକ (ତାଙ୍କ କଥା ପରେ କହିବି)ଙ୍କ ସାଙ୍ଗରେ ନାରୀଗାଁରୁ ଆମ ଘରକୁ ଆସିଛି। ମନ୍ଦିର ସମ୍ମୁଖରେ ପ୍ରଶସ୍ତ ଖୋଲା ମଣ୍ଡପ। ମଣ୍ଡପ ତଳେ ଗୋଟିଏ କଡ଼କୁ ଥାଏ କୃଷ୍ଣଚୂଡ଼ା ଗଛଟିଏ। ଅଳ୍ପ ଦୂରରେ ପକ୍କା କୂଅ। କୂଅକୁ ଲାଗି ପାଣି କୁଣ୍ଡ। ଏଇ କୁଣ୍ଡରେ ମୋର ଜଣେ ସମ୍ପର୍କୀୟା ମାଇଁ ପ୍ରତିଦିନ ସକାଳୁ ଆସି କୂଅରୁ ପାଣି କାଢ଼ି କୁଣ୍ଡ ଭର୍ତ୍ତି କରି ଦିଅନ୍ତି ତୃଷାତୁର ଗାଈଗୋରୁଙ୍କ ପାଇଁ। କୂଅ ମୂଳେ ଥାଏ କେନ୍ଦୁଗଛ। କେନ୍ଦୁଗଛ ତଳେ ସିନ୍ଦୂର ବିମଣ୍ଡିତ ମାଟି ଘୋଡ଼ା ସବୁ ଇତସ୍ତତଃ ପଡ଼ିଥାନ୍ତି। ସଞ୍ଜ ନଇଁଲେ ଠାକୁରମା' (ମୋ ବାପାଙ୍କ ବୋଉ) ସାଙ୍ଗରେ ଆମେ ସବୁ ପହଁରାକାଞ୍ଚି କିମ୍ବା ବାଉଁଶ କାଠି ଆଗରେ କନା ଗୁଡ଼ାଇ ତେଲରେ ବୁଡ଼ାଇ ବିଲେ ବିଲେ ଆସି ଠାକୁରାଣୀ ମନ୍ଦିରରେ ସଞ୍ଜବତୀ ଜାଳିଥାଉଁ ଏବଂ ଝୁଲି ରହିଥିବା ଘଣ୍ଟି ବଜାଉ। ସଞ୍ଜବତୀ ସବୁ ଏକାଠି ମିଶି ମଶାଲ ପରି ଜଳି ଉଠେ। ଠାକୁରମା' କହେ ନିଶାର୍ଦ୍ଧରେ ମା' ରଡ଼ଙ୍ଗେଇ ମଶାଲ ଧରି ଘୋଡ଼ାରେ ଚଢ଼ି ଗାଁ ପରିକ୍ରମା କରନ୍ତି। କେନ୍ଦୁଗଛ ମୂଳେ କେନ୍ଦୁଫୁଲ

ବିଛେଇ ହୋଇ ପଡ଼ିଥାଏ । ଆମେ ୨/୪ଜଣ କେନ୍ଦୁଫୁଲ ଗୋଟାଇ ଆଣି ସେଥିରେ ଅଳଙ୍କାର ଗୁନ୍ଥି, ହାତ, ପାଦ, ବେକରେ ପିନ୍ଧି ଜହ୍ନ ଆଲୁଅରେ ଖେଳୁ । ମୋର ଅଳଙ୍କାର ପିନ୍ଧିବାର ସଉକ ସେଇ କେନ୍ଦୁଫୁଲରୁ ହିଁ ମେଣ୍ଟି ଯାଇଥିଲା । ପରବର୍ତ୍ତୀ ଜୀବନରେ ଆଉ ଅଳଙ୍କାର ପିନ୍ଧିବାର ସୁଯୋଗ ମୋତେ ମିଳି ନଥିଲା ।

ଆମ ଗାଁ ଏଲ୍.ପି. ସ୍କୁଲରେ କେହି ବୋଧହୁଏ ରେଗୁଲାର୍ ଶିକ୍ଷକ ନଥିଲେ । ତେଣୁ ପରମାନନ୍ଦ ନାମକ ଜଣେ ଯୁବ ଶିକ୍ଷକ ଆମ ଘରକୁ ଆସୁଥାନ୍ତି । ମୁଁ ଏବଂ ମୋ ସାନ ଭଉଣୀ ସୁଷମା ତାଙ୍କ ପାଖରେ ପଢୁଥାଉ । ସୁଷମା ମୋ ଦାଦାଙ୍କ ଝିଅ । ମୋଠାରୁ ୨/୩ ବର୍ଷ ସାନ । ଦିନେ ସନ୍ଧ୍ୟାବେଳେ ଏମିତି ହେଲା ଯେ ଶିକ୍ଷକ ଜଣକ ଆମକୁ ଦଣ୍ଡ ଦେବା ପାଇଁ ଉଠ୍ ବସ୍ ହେବାକୁ କହିଲେ । ମୁଁ ଉଠ୍ ବସ୍ ହେଲି କି ନାହିଁ ମୋର ମନେ ପଡୁ ନାହିଁ । ମାତ୍ର ସୁଷମାର ସରଳ ଶିଶୁ ମନରେ କି ଅଭିମାନ ଆସିଲା ଯେ ସେ ଅବିରାମ ଗତିରେ ଉଠ୍ ବସ୍ ହୋଇ ଚାଲିଲା । ଯେତେ ବାରଣ କଲେ ମଧ୍ୟ ବନ୍ଦ ହେଉ ନଥାଏ । ଶେଷରେ ମୋ ବୋଉ ଆସି ଆମକୁ ଘରକୁ ନେଇଗଲା । ଆମର ପାଠପଢ଼ା ସେତିକିରୁ ବନ୍ଦ ହେଲା । କିଛିଦିନ ପରେ ସ୍କୁଲକୁ ଜଣେ ନିୟମିତ ଶିକ୍ଷକ ଆସିଲେ । ତାଙ୍କ ନାଁ ପୁରୁଷୋତ୍ତମ ଗିରି । ତାଙ୍କ ଘର କଷଣଅଣ୍ଟା । ଥରେ ଚଣ୍ଡିଆଗଡ଼ି ଯିବା ବାଟରେ ଭାଇ (ଶ୍ରୀ ବିଚିତ୍ରା ନନ୍ଦ ନାଥଶର୍ମା)ଙ୍କ ସାଙ୍ଗରେ ତାଙ୍କ ଘରକୁ ଯାଇଥିବାର ମନେପଡୁଛି । ବହୁତ ଖୁସି ହୋଇ ଆଦର କରିଥିଲେ । ତାଙ୍କରି ସମୟରେ ପୁରସ୍କାର ବିତରଣୀ ଉତ୍ସବ ଉପଲକ୍ଷେ ସିଦ୍ଧବାଲି ଯାଇଥିଲି । ସେଠି ଛାନ୍ଦ ଗାଇଥିଲି, ଭାଇ ଶିଖାଇ ଦେଇଥିବା ପାଲା ଗାଇଥିଲି । ସେଥିରେ ପ୍ରୀତ ହୋଇ କୂଳସାହି ସ୍କୁଲର ସାର୍ ନୃସିଂହ ଥାଟୋଇ ଏବଂ ଦାଣ୍ଡିସାହିର ସହଦେବ ସାର୍ ମୋତେ କୂଳସାହି ଓ ଦାଣ୍ଡିସାହିରେ ପଢ଼ାଇବା ପାଇଁ ଆମ ଘରକୁ ଆସି ବାପାଙ୍କୁ କହୁଥିଲେ । ଦାଣ୍ଡିସାହିରେ ପଢ଼ିବାକୁ ମୋ ସାଙ୍ଗରେ ଯିବା ପାଇଁ କେହି ଝିଅ ପିଲା ନଥିଲେ । କୂଳସାହି ଯିବା ପାଇଁ ମଧ୍ୟ ସେହି ଅସୁବିଧା ଥିଲା । ତେଣୁ ଚତୁର୍ଥ ଶ୍ରେଣୀରେ ପଢ଼ିବା ପାଇଁ ମୋତେ ଚଣ୍ଡିଆଗଡ଼ି ଅପେକ୍ଷା କରି ରହିଥିଲା ।



# ଜୟହିନ୍ଦ୍ ହାଇସ୍କୁଲ

ଜୟହିନ୍ଦ୍ ହାଇସ୍କୁଲ କହିଲେ ପ୍ରଥମେ ଆଖି ଆଗକୁ ଆସନ୍ତି ହେଡ୍‌ମାଷ୍ଟର ଶ୍ରୀ ବିକ୍ରମ ଚରଣ ରାଉତ। ଶାନ୍ତ, ଧୀର, ଗାମ୍ଭୀର୍ଯ୍ୟପୂର୍ଣ୍ଣ ଚେହେରା। ଆଖିରେ ଆଖି ମିଶିଲେ ମୁଣ୍ଡ ଆପେ ଆପେ ତଳକୁ ନଇଁଯାଏ। ସେ ମହାତ୍ମା ଆଜି ଦିବଂଗତ। ତାଙ୍କରି ମହାନ୍ ଆତ୍ମା ଉଦ୍ଦେଶ୍ୟରେ ମୋର ଭକ୍ତି ପୁଷ୍ପାଞ୍ଜଳି ଅର୍ପଣ କରୁଛି। ତାଙ୍କର କୃପାରୁ ମୁଁ ଯତ୍‌କିଞ୍ଚିତ୍ ଶିକ୍ଷା ଲାଭ କରିଛି ଏବଂ ତାହାହିଁ ମୋର ବର୍ତ୍ତମାନ ଜୀବିକା ନିର୍ବାହର ମାଧ୍ୟମ। ସେ ଅନୁମତି ଦେଇ ନଥିଲେ ଜୀବନ ଭିନ୍ନ ମୋଡ଼ ନେଇଥାନ୍ତା। ସ୍କୁଲ ଛାଡ଼ିଲା ପରେ ତାଙ୍କୁ ଆଉ ଦେଖିବାର ସୌଭାଗ୍ୟ ମୋତେ ମିଳିନାହିଁ। କେବଳ ଶୁଣିଥିଲି ଥରେ ଭୁବନେଶ୍ୱର ଆସିଥିଲେ ବୋଧହୁଏ ତାଙ୍କ ପୁଅ ଜୟନ୍ତ ବାହାଘର ପାଇଁ। ରସୁଲଗଡ଼ ଆସିଥିଲେ, ଆମର ଝିଅ, ପୁଅଙ୍କ କଥା ଶୁଣି ଖୁସି ହୋଇଥିଲେ। ଆଉ ପିଲା ଦରକାର ନାହିଁ ବୋଲି ସତର୍କ କରି ଦେଇଥିଲେ।

ଚଣ୍ଡିଆଗଡ଼ିରେ ଜନ୍ମସ୍ଥାନକୁ ଆବିଷ୍କାର କଲା ଭଳି ଜନ୍ମ ତାରିଖ ଜାଣିଲି ମାଟ୍ରିକ୍ ପରୀକ୍ଷା ପାଇଁ ଫର୍ମ ପୂରଣ କରିବା ବେଳେ। ସେତିକିବେଳେ ମୋ ନାଁର ମଧ୍ୟ ପରିବର୍ତ୍ତନ ହୋଇଥିଲା। ଆଗରୁ ମୋ ଭାଇ (ଶ୍ରୀ ବିଚିତ୍ରାନନ୍ଦ ନାଥଶର୍ମା) ମୋ ନାଁ ସତ୍ୟବତୀ ଦେଇଥିଲେ। ମୁଁ ମଧ୍ୟ ସେହି ନାଁରେ ସ୍କୁଲରେ ସମସ୍ତଙ୍କ ପାଖରେ ପରିଚିତ ଥିଲି ଏବଂ ଖାତାରେ ମଧ୍ୟ ଲେଖି ଚାଲିଥିଲି। ମୋର ସହପାଠୀମାନେ ମଧ୍ୟ ମୋର କୋର୍ଡ଼ ନାଁ ଟି.ସି. (ଟୁଥ୍ କ୍ୟାଣ୍ଡେଲ) ବୋଲି ଦେଇଥିଲେ। ମାତ୍ର ଫର୍ମ ପୂରଣ ବେଳେ ହେଡ୍‌ମାଷ୍ଟ୍ରେ କହିଲେ, "ଫର୍ମରେ ସତ୍ୟଭାମା ଲେଖିବୁ। ବାପା ନାଁକୁ ସତ୍ୟଭାମା ବୋଲି ଲେଖାଇଛନ୍ତି।"

ଏକ ପ୍ରବେଶିକା ପରୀକ୍ଷା ଦେଇ ମୁଁ ଅଷ୍ଟମ ଶ୍ରେଣୀ ପାଇଁ ଯୋଗ୍ୟ ବିବେଚିତ ହୋଇଥିଲି। କାରଣ ୭ମ ଶ୍ରେଣୀ ମୁଁ ପୁରା ପଢ଼ି ନଥିଲି କି ପରୀକ୍ଷା ମଧ୍ୟ ଦେଇ ନଥିଲି। ତେଣୁ ମୋର ସାର୍ଟିଫିକେଟ୍ ନଥିଲା। ମୋ

ଚେହେରା ଦେଖି ଏବଂ ସମବୟସ୍କମାନଙ୍କର ସାର୍ଟିଫିକେଟ ଦେଖି ବୋଧହୁଏ ହେଡ଼ମାଷ୍ଟ୍ରେ ମୋ ଜନ୍ମ ତାରିଖ ଲେଖିଥିଲେ ୧୪ ନଭେମ୍ବର ୧୯୫୦।

ସ୍କୁଲ ଯିବା ଆଗରୁ ମୋ ଭଉଣୀ ସୁଷମା ମୋତେ ଟିଉସନ କରିଥିଲା ଶାଢ଼ୀ ପିନ୍ଧିବାକୁ, ପୁଅମାନଙ୍କ ସହିତ କଥା ନହେବାକୁ ଓ ସ୍କୁଲରେ ସବୁବେଳେ ତଳକୁ ଅନାଇ ଚାଲିବାକୁ। ଏ ସବୁ ମୋ ପାଇଁ ଅଡୁଆ ଲାଗୁଥିଲେ ବି ଯେହେତୁ ମୋ ଆଗରୁ ସେ ସେ ସ୍କୁଲରେ ପଢୁଥିଲା, ତା'ର ଅଭିଜ୍ଞତାକୁ ସମ୍ମାନ ଦେଇ ମୁଁ ତାହାହିଁ କରିଥିଲି। ସହପାଠୀ ଯେଉଁମାନେ ଥିଲେ ସେମାନଙ୍କ ମଧ୍ୟରୁ ନିଗମାନନ୍ଦ ମଲ୍ଲିକ (ଦିବଂଗତ), ଡ. ସୁରେନ୍ଦ୍ର ପରିଡ଼ା, ଅନ୍ତର୍ଯ୍ୟାମୀ ସ୍ୱାଇଁ, ଦିବାକର ବିଶ୍ୱାଳ, ବିଜୟ ବରାଳ, ଗିରୀଶ ଚନ୍ଦ୍ର ବର୍ମା ଇତ୍ୟାଦି ଉତ୍ତର ଜୀବନରେ ଅତି ଅନ୍ତରଙ୍ଗ ଓ ଭିନ୍ନ ସମ୍ପର୍କରେ ସମ୍ପର୍କିତ। ସେମାନଙ୍କ ସାହାଯ୍ୟ, ସହାନୁଭୂତିରେ ଏ ଯାବତ୍ ଜୀବନ ଚକ ଗଡ଼ି ଚାଲିଛି। ମନେପଡ଼େ ଏକାଦଶ ଶ୍ରେଣୀର ବିଦାୟ ଉତ୍ସବ। ବିଦାୟ ସଂଗୀତଟି କିଏ ଲେଖିଥିଲେ ଏବଂ କିଏ ଗାଇଥିଲେ ଜଣାନାହିଁ। ମାତ୍ର ସଂଗୀତର ଆରମ୍ଭ ଦୁଇଧାଡ଼ି ମନେଅଛି।

"ଏ ବିଦାୟ ପରେ ବନ୍ଧୁ ଯେବେ ହୁଏ ଦେଖା
ନ ଭୁଲିବ ଭ୍ରାତୃ ଭାବ ନ ଭୁଲିବ ସଖା।"

ଏବେ ବି ମନେ ପଡ଼ିଲେ ହୃଦୟରେ ଆଲୋଡ଼ନ ସୃଷ୍ଟି ହୁଏ। ମନେପଡୁଛି ସାର୍‌ମାନଙ୍କର ଚେହେରା ଓ ସେମାନଙ୍କର ଛାତ୍ର ବତ୍ସଳତା। ସେମାନଙ୍କ ମଧ୍ୟରୁ କିଏ ଅମରପଥର ଯାତ୍ରୀ ହେଲେଣି ଜଣା ନାହିଁ। ତେବେ ସମସ୍ତଙ୍କ ଉଦ୍ଦେଶ୍ୟରେ ଆଜି ପ୍ରଣାମ ଜଣାଉଛି।

●

# ଭଦ୍ରକ କଲେଜ

ଭଦ୍ରକ କଲେଜ ଥିଲା ମୋ ପାଇଁ ଯୌବନର ଉପବନ। ସେଇଠି ପାଇଥିଲି ଜୀବନ ଚଲାପଥରେ ଚାଲିବା ପାଇଁ ଜଣେ ସହଯାତ୍ରୀ। ସେଇଠି ମିଳିଥିଲା ଅନାବିଳ ଭ୍ରାତୃପ୍ରେମର ଅମୃତ ଅନୁଭବ। ଶ୍ରୀ ସୁରେଶ ଚନ୍ଦ୍ର ନାୟକ, ମୋତେ ନ ଦେଖି ତାଙ୍କ ହୃଦୟରେ ମୋତେ ଭଉଣୀର ସ୍ଥାନ ଦେଇଥିଲେ କେଉଁ ଘଟଣାରୁ ମୁଁ କେବେ ତାହା ଜାଣିବାକୁ ଚାହିଁ ନାହିଁ। ଦିନେ ଆମ ଲେଡ଼ିଜ୍ ହଷ୍ଟେଲ୍‌ରେ ସେ ଆସି ପହଞ୍ଚିଲେ ମୋତେ ଦେଖିବାକୁ, ବିଭୁତି ସାଙ୍ଗରେ କି ଅନ୍ତର୍ଯ୍ୟାମୀ ସାଙ୍ଗରେ ଠିକ୍ ଭାବରେ ମନେପକାଇ ପାରୁନାହିଁ। ସମବୟସ୍କ ହେଲେ ମଧ୍ୟ ମୋର ସୌଭାଗ୍ୟ ସେ ମୋତେ ସାନ ଭଉଣୀର ଆସନ ଦେଇଥିଲେ। ସେ ଥିଲେ ତାଙ୍କ ପରିବାରର ବଡ଼ପୁଅ। ସେ ଏତେ ସ୍ୱାଭିମାନୀ ଯେ, ସ୍ୱାଭିମାନ ଉପରେ ଆଞ୍ଚ ଆସିଲେ ସେ କି ଭୟଙ୍କର କାଣ୍ଡ ଘଟାଇ ପାରନ୍ତି, ସେ ସମ୍ପର୍କରେ ଏକ ଘଟଣା ପରେ କହିବି। ତାଙ୍କରି ପାଇଁ ସେତେବେଳେ ଭଦ୍ରକ କଲେଜରେ ପଢୁଥିବା ଯାଜପୁର ଅଞ୍ଚଳର କେତେଜଣ ଜଣାଶୁଣା ଛାତ୍ର ମୋର ଭାଇ-ହିସାବରେ ଆଜିଯାଏ ରହିଛନ୍ତି। ସେମାନେ ହେଉଛନ୍ତି ଶ୍ରୀ ବିଭୁତି ଆଚାର୍ଯ୍ୟ, ଶ୍ରୀ ବିଶ୍ୱ ପ୍ରକାଶ ମହାପାତ୍ର, ଶ୍ରୀ ସନ୍ତୋଷ ଦାସ, ଶ୍ରୀ ହରିବଲ୍ଲଭ ଦାଶ ଇତ୍ୟାଦି। ଜଣେ କେବଳ ଏ ନିୟମର ବ୍ୟତିକ୍ରମ ଥିଲେ, ସେ ହେଉଛନ୍ତି ଶ୍ରୀ ବିମଳ ନାୟକ (ପରେ ଏସ୍.ବି.ଆଇ.ରେ ପଦସ୍ଥ ଅଫିସର୍ ଭାବେ ଅବସରପ୍ରାପ୍ତ)। ତାଙ୍କୁ ମୋ ପିଲାମାନେ ଦାଦା ବୋଲି ଡାକି ଆସୁଛନ୍ତି। ମନର ଭାବ ପାଖରେ ବୟସ ଯେ ହାରମାନେ, ଏକଥା ସେହି ଭଦ୍ରକରୁ ହିଁ ଅନୁଭବ କରିଥିଲି। ସେ ଯେ କଥାରେ କଥାରେ ଖାଲି ମୋର ଭାଇ ହୋଇଥିଲେ ତା ନୁହେଁ ବଡ଼ ଭାଇର କର୍ତ୍ତବ୍ୟ ମଧ୍ୟ କରିଛନ୍ତି। ଆମେ ସାଙ୍ଗ ହୋଇ ତାଙ୍କ ଗାଁ 'ନାରୀଗାଁ'(ମଙ୍ଗଳପୁର)କୁ ଗଲୁ। ଘରେ ପହଞ୍ଚିଲାକ୍ଷଣି ବୋଉ ପରିବାରର ସମସ୍ତଙ୍କୁ ବଡ଼ ପାଟିରେ ଡାକି କହିଥିଲା, "ଏ ସମସ୍ତେ ଆସ, ମୋର ଏଠି ଗୋଟିଏ ଝିଅ ଜନ୍ମ ହେଲାଣି।" ଏ କଥା ଆଜି ଲେଖିଲାବେଳେ ହୃଦୟରେ କୋହ ଉଠୁଛି।

ସେହି ଦିନଠାରୁ 'ନାରୀଗାଁ'ରେ ବାପା, ବୋଉ, ସାନ ଭାଇ ଭଉଣୀ, ସାହିପଡ଼ିଶା, ବନ୍ଧୁବାନ୍ଧବ ସମସ୍ତଙ୍କ ସାଙ୍ଗରେ ମୁଁ ଜଣେ ହୋଇ ମିଶିଗଲି। ଏ ପର୍ଯ୍ୟନ୍ତ ମଧ୍ୟ ସେ ସମ୍ପର୍କ ଅତୁଟ ରହିଛି। ମୁଁ ତାଙ୍କୁ ବହୁତ ଭଲ ପାଏ। ଭଲ ପାଇବାର ଗଭୀରତାକୁ ଅନୁଭବ କଲି ଯେତେବେଳେ ତାଙ୍କ ସାଂସାରିକ ଜୀବନରେ ବିଭିନ୍ନ ଚାପ ଭିତରେ ରହି ସେ ମୋ ସହ ଯୋଗାଯୋଗ ରଖି ପାରିଲେ ନାହିଁ। ମୋ ଜୀବନର ଚରମ ଦୁର୍ଦ୍ଦିନରେ ତାଙ୍କର ଅନୁପସ୍ଥିତି ମୋ ଧୈର୍ଯ୍ୟର ବନ୍ଧ ଭାଙ୍ଗି ଦେଇଥିଲା। ରାତି ରାତି କାନ୍ଦି କାନ୍ଦି ସଂସାରର ସବୁ ସମ୍ପର୍କ ଅଳୀକ ବୋଲି ମନେ ହୋଇଥିଲା। ଯେତେବେଳେ ତାଙ୍କ ସହ ଦେଖାହେଲା ଅଭିମାନରେ ସେ ମୋ ପ୍ରତି ଓ ମୋ ପିଲାମାନଙ୍କ ପ୍ରତି ଦେଖାଇଥିବା ଅବହେଳା ସବୁ ଗୋଟି ଗୋଟି କହିଲି। ସେ ମୋ ହାତଧରି କହିଲେ, "ମୁଁ ତୋ ପ୍ରତି ବହୁତ ଅବହେଳା କରିଛି, ସବୁ ଭୁଲିଯା।" ତାଙ୍କର ଏହି ଗୋଟିଏ ପଦ କଥା ମୋ ଅନ୍ତରର ସବୁ ଅଭିମାନ ପୋଛି ଦେଲା। ବର୍ତ୍ତମାନ ସେ ଭୁବନେଶ୍ୱର କାନନ ବିହାରରେ ରହୁଛନ୍ତି। ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି ତାଙ୍କୁ ଭଲରେ ରଖିବା ପାଇଁ।

ଗହଳିଆ ଆମ୍ରକୁଞ୍ଜର ପରିବେଷ୍ଟନୀ ଭିତରେ ଠାଏ ଠାଏ ଠିଆ ହୋଇଥିଲା କଲେଜର ବିଭିନ୍ନ ବିଭାଗର ଅଟ୍ଟାଳିକା ଓ ଅଧ୍ୟାପକମାନଙ୍କର କ୍ୱାର୍ଟରସ୍ ସବୁ। ସାଇକୋଲଜି ଡିପାର୍ଟମେଣ୍ଟଟି ଥିଲା ଟିକେ ନିରୋଳା ଓ ଖୋଲା ଜାଗାରେ। ଦିନେ କ୍ଲାସ ରୁମ୍‌ରେ ବସିଥିଲା ବେଳେ ଝରକା ବାଟେ ବାହାରକୁ ଚାହିଁଥିଲି। କ୍ଲାସ ନେଉଥିଲେ ଅଧ୍ୟାପକ ଶ୍ରୀ ନିତ୍ୟାନନ୍ଦ ପତି। ମୋର ଅନ୍ୟମନସ୍କତାକୁ ଲକ୍ଷ୍ୟ କରି ପ୍ରଶ୍ନ କଲେ, "ସତ୍ୟଭାମା, କ'ଣ ଦେଖୁଛ ?" ମୁଁ କହିଲି "ସାର୍ କିଛିନାହିଁ, ଖୋଲା ଆକାଶ।" ମୁହଁରେ ସ୍ମିତହାସ୍ୟ ଫୁଟାଇ ସେ କହିଥିଲେ, "ଖୋଲା ଆକାଶରେ ଅନେକ ଦୃଶ୍ୟ ଦେଖିହୁଏ। ଖାଲି କାଗଜରୁ ଅନେକ କଥା ପଢ଼ି ହୁଏ।" ତାଙ୍କର ଏ କାବ୍ୟିକ ଅଭିବ୍ୟକ୍ତି ମୋତେ ଅପମାନିତ କରିବା ଉଦ୍ଦେଶ୍ୟରେ ନଥିଲା। ଏହାର ପ୍ରଚ୍ଛନ୍ନ କାରଣ ସେ ଜାଣିଥିଲେ ଏବଂ ମୁଁ ଲାଜରେ ନିରବ ରହିଥିଲି। ଏ କଥା ଲେଖିଲାବେଳେ ମୁଁ ଫେରି ଯାଉଛି ସେହି ସତୁରି/ଏକସ୍ତରି ମସିହାକୁ ଏବଂ ମୋତେ ଲାଗୁଛି ମୁଁ ଯେମିତି ଭଦ୍ରକ କଲେଜର ସେହି ମନୋରମ ପରିବେଶ ଭିତରେ ହିଁ ଅଛି। ସାର୍‌ଙ୍କର ସୌମ୍ୟକାନ୍ତ ମୁଖ ମଣ୍ଡଳ, ଦୀର୍ଘ ଚେହେରା

ଆଖି ଆଗରେ ନାଚି ଯାଉଛି। ବହୁ ବର୍ଷ ପରେ ସାର୍‌ଙ୍କ ସାଙ୍ଗରେ ଦେଖା ହୋଇଥିଲା ଭି.ଏସ୍.ଏସ୍. ନଗରରେ ଭଡ଼ା ଘରେ ରହିଲା ବେଳେ। ସାର୍ ମଧ୍ୟ ସେହି ଭି.ଏସ୍.ଏସ୍. ନଗରରେ ରହୁଥିଲେ। ବୋଧହୁଏ ବାଣୀବିହାରରେ ରିସର୍ଚ୍ଚ କରୁଥିଲେ। ତାଙ୍କ ଘରକୁ ଡାକି ନେଇଥିଲେ। ନାନୀ(ତାଙ୍କ ସ୍ତ୍ରୀ)ଙ୍କ ସହିତ ପରିଚୟ କରାଇ କେତେ ଆଦର କରିଥିଲେ। ତାଙ୍କ ଅନ୍ତରର କେତେକ ଗୋପନ କଥା ପରୋକ୍ଷ ଭାବରେ କହିଥିଲେ। ପରେ ଶୁଣିଲି ଅକାଳରେ ଚାଲିଗଲେ। ବହୁତ ଦୁଃଖ ଆସିଥିଲା ମନରେ।

ଶ୍ରୀଯୁକ୍ତ ବସନ୍ତ କୁମାର ଦାସ ଥାଆନ୍ତି ସାଇକୋଲୋଜି ଡିପାର୍ଟମେଣ୍ଟର ଏଚ୍.ଓ.ଡ଼ି.। ସେ ବହୁତ ସ୍ନେହୀ। ତାଙ୍କ ଶାଳୀ ଉଷା ଆମ ସାଙ୍ଗରେ ପଢୁଥାଏ। ସାର୍ ତାଙ୍କୁ ସାନ ଭଉଣୀ ଭଳି ସ୍ନେହ ଦେଉଥାନ୍ତି ଏବଂ ସେହି ନ୍ୟାୟରେ ଆମେ ସବୁ ମଧ୍ୟ ତାଙ୍କ ସହିତ ସେହି ଭାବରେ ବାନ୍ଧି ହୋଇଥାଉ। ଆମ ଘରଠାରୁ ଅନତି ଦୂରରେ ସାର୍ ରହୁଛନ୍ତି। ମୋ ଝିଅ ଚେତନା ଯେଉଁଦିନ ତା ବାପାଙ୍କର ସ୍ମରଣିକା ପୁସ୍ତକଟି ଉନ୍ମୋଚନ କରୁଥିଲା ସେଦିନ ସାର୍ ଆସିଥିଲେ। ଅପା (ଶାନ୍ତି ଅପା, ସାର୍‌ଙ୍କ ସ୍ତ୍ରୀ) ମଧ୍ୟ ଆସିଥିଲେ। ସାର୍‌ଙ୍କୁ ଦେଖି ମୁଁ ହୃଦୟରେ ଏକ ଅବ୍ୟକ୍ତ ବେଦନା ଅନୁଭବ କରିଥିଲି। ୧୯୭୫ ମସିହାରେ ବାରବାଟୀ ଷ୍ଟାଡ଼ିୟମ୍‌ରେ ଯେଉଁ ପ୍ରିୟ ଛାତ୍ରର ବିବାହ ଉତ୍ସବରେ ଆଶୀର୍ବାଦ ଦେବାକୁ ସେ ଉପସ୍ଥିତ ହୋଇଥିଲେ ସେଦିନ ସ୍ମରଣିକା ଉନ୍ମୋଚନରେ ସେ ଗମ୍ଭୀର ହୋଇ ବସି ସେହି ଛାତ୍ରର ସ୍ମୃତି ଚାରଣ କରୁଥିଲେ। ତାଙ୍କୁ ଆଜି ପର୍ଯ୍ୟନ୍ତ ଖୋଜୁଛନ୍ତି ବୋଲି ସ୍ମରଣିକାରେ ଲେଖିଛନ୍ତି। ସାର୍‌ଙ୍କୁ ମୋର ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାଉଛି ଏବଂ ଥରେ ଭେଟିବାର ଅଭିଳାଷ ରଖୁଛି।

ମନେପଡ଼ନ୍ତି ବିଦ୍ୟାଧର ସାର୍, ଶ୍ରୀ ବିଦ୍ୟାଧର ନାୟକ, ଅର୍ଥନୀତିର ଅଧ୍ୟାପକ। ତାଙ୍କ ସହିତ ଏକ ଆବେଗିକ ଓ ପାରିବାରିକ ସମ୍ପର୍କ ଗଢ଼ି ଉଠିଥିଲା। ସମ୍ପର୍କର କାରଣ ଥିଲେ ତାଙ୍କର ପ୍ରିୟତମ ଛାତ୍ର ବୈକୁଣ୍ଠ ବିଶ୍ୱାଳ, ଅର୍ଥନୀତିର ଛାତ୍ର ଥିଲେ। ମୋତେ ଆଦରରେ ସତ୍ୟଭାମା ନ ଡାକି ସତିଆ (ମୋର ଡାକ ନାମ) ବୋଲି ଡାକୁଥିଲେ। ତାଙ୍କର ଯୁବ ସୁଲଭ ଚେହେରାରେ ଅନ୍ତରର ନିର୍ଭୀକତା ସ୍ପଷ୍ଟ ବାରି ହୋଇପଡ଼େ। ନିର୍ମଳ ସ୍ୱଚ୍ଛ ହୃଦୟ, ଛଳନାହୀନ ସ୍ପଷ୍ଟ କଥା ତାଙ୍କ ଚରିତ୍ରର ବିଶେଷତ୍ୱ। କଲେଜ ଛାଡ଼ିଲା ପରେ

ସାର୍‌ଙ୍କ ସହିତ ବହୁତ ଥର ଦେଖା ହୋଇଛି। ମୁଁ ବି.ଏଡ୍. ଟ୍ରେନିଂ ନେଉଥିଲାବେଳେ ସାର୍ ସେତେବେଳେ ସମ୍ବଲପୁରରେ ଥିଲେ। ସାର୍ ରେଭେନ୍‌ସା କଲେଜରେ ଥିଲାବେଳେ କଟକରେ ତାଙ୍କ ଘରେ, ପୁଣି ସାର୍‌ଙ୍କର ଅବସର ଜୀବନରେ ତାଙ୍କ ଘର ମହାନଦୀ ବିହାରରେ। ମୋ ପୁଅ ଝିଅଙ୍କୁ ବହୁତ ଶ୍ରଦ୍ଧା କରନ୍ତି। ନାତି, ନାତୁଣୀ ନ୍ୟାୟରେ ଥଟ୍ଟା ତାମସା ମଧ୍ୟ କରନ୍ତି। କେତେ ନୀତି କଥା ଶିଖାଇଛନ୍ତି ମଧ୍ୟ। ବୋଧହୁଏ ୧୯୯୭ ମସିହା ଗ୍ରୀଷ୍ମାବକାଶ ସମୟ। ମୋ ଝିଅର ଇଚ୍ଛା ପୂରଣ ପାଇଁ ମୁଁ ତା ସାଙ୍ଗରେ ସିନେମା ଦେଖିବା ପାଇଁ ରାଜି ହୋଇଥିଲି ଓ ଆମ ଦୁଇ ଜଣଙ୍କର ଟିକଟ କରା ହୋଇଥିଲା। ରବି ଟକିଜ୍‌ରେ ସିନେମା ପଡ଼ିଥିଲା "ହମ୍ ଆପକେ ହେ କୌନ୍"।

ଠିକ୍ ଆମର ବାହାରିବା ସମୟରେ ଅଚାନକ ସାର୍ ଆସି ପହଞ୍ଚିଲେ ଆମ ଘରେ। ତାଙ୍କର ଜଣେ ଛାତ୍ର ସାଙ୍ଗରେ ଆସିଥାନ୍ତି। ବହୁତ ଗୁଡ଼ାଏ ଆମ୍ବ ଆଣି ଥିବାର ମନେଅଛି। ମୁଁ ସ୍ତମ୍ଭୀଭୂତ ହୋଇଗଲି ସାର୍‌ଙ୍କୁ ଦେଖି। ମନ ଆନନ୍ଦରେ ଫାଟି ପଡୁଥାଏ। ମାତ୍ର ଏଆଡ଼େ ଝିଅର ସିନେମା ଦେଖା ଡେରି ହୋଇ ଯାଉଛି। ସାର୍ ଯେମିତି ଶୁଣିଲେ ଆମର ସିନେମା ଟିକେଟ୍ ହୋଇଛି ବୋଲି ଆମକୁ ତଡ଼ି କରି ପଠାଇଦେଲେ। ଝିଅକୁ ଥଟ୍ଟା କରି କହୁଥାନ୍ତି "ଯା ଯା, ହମ ଆପକେ ହେ କୌନ୍, ହମ ଆପକେ ହେ କୌନ୍।" ସାର୍‌ଙ୍କୁ ଛାଡ଼ି ଯିବାର ଇଚ୍ଛା ନଥିଲେ ମଧ୍ୟ ବାଧ୍ୟ ହୋଇ ଯାଇଥିଲି ସେଦିନ। ତା'ପରେ ଭାଗ୍ୟର ଚରମ ଦୁର୍ଦ୍ଦିନରେ ସାର୍ ଆସିଛନ୍ତି, ଧୈର୍ଯ୍ୟ ଦେଇଛନ୍ତି। ପୁଅ, ଝିଅଙ୍କ ବାହାଘର ବେଳେ ମଧ୍ୟ ଆସି ଆଶୀର୍ବାଦ ଦେଇଛନ୍ତି। ଆଉ ତାଙ୍କୁ ଦେଖିବାର ସୁଯୋଗ ମିଳିନାହିଁ। ସେହି ଅମର ଆତ୍ମାଙ୍କ ଉଦ୍ଦେଶ୍ୟରେ ମୋର ଭକ୍ତିପୂତ ପ୍ରଣାମ ଜଣାଉଛି।

ମୁଁ ଥିଲି ଓଡ଼ିଆ ସାହିତ୍ୟର ଛାତ୍ରୀ। ଅଧ୍ୟାପକମାନଙ୍କର ଅଧ୍ୟାପନାର ଶୈଳୀ ଥିଲା ଚମତ୍କାର। ଥରେ କ୍ଲାସରେ ମେହେରଙ୍କ ତପସ୍ୱିନୀ କାବ୍ୟ ପଢ଼ା ହେଉଥାଏ। କ୍ଲାସ ନେଉଥାନ୍ତି ଅଧ୍ୟାପକ ଶ୍ରୀ ସୁଧାଂଶୁ ଶେଖର ରାୟ, ପ୍ରସଙ୍ଗ ଥିଲା ପ୍ରଜାରଞ୍ଜନ ପାଇଁ ପ୍ରାଣପ୍ରିୟା ସୀତାଙ୍କୁ ବିସର୍ଜନ ଦେଲା ପରେ ରାମଚନ୍ଦ୍ରଙ୍କର ବ୍ୟାକୁଳତା।

"ଲକ୍ଷ୍ମଣ ଆସିବ ସକଳ ଭାଷିବ ଜୀବନ ସଙ୍ଗିନୀ କଥା
ଶ୍ରବଣ ଯୁଗଳ ନ ହୁଅ ବିକଳ ଶୁଣିବ ମୁଞ୍ଚିବ ବ୍ୟଥା।"

ସୁଧାଂଶୁ ସାର୍ କ୍ଲାସ ରୁମ୍‌ରୁ ଧୀରେ ବାହାରିଗଲେ, ଲକ୍ଷ୍ୟ କରିଥିଲି କ୍ଲାସରୁମ୍ ବାରଣ୍ଡାରେ ଚଷମା ଖୋଲି ରୁମାଲରେ ଆଖି ଲୁହ ପୋଛି ପୁଣି କ୍ଲାସକୁ ଫେରି ଆସିଲେ। ଆଉ ଦିନେ ତାଙ୍କ କ୍ୱାଟରକୁ ଯାଇଥିଲି। ସେହି ସମୟରେ ଅସରାଏ ବର୍ଷା ହୋଇ ଛାଡ଼ି ଯାଇଥାଏ। ଚାରିଆଡ଼ ନୀରବ, ନିଷ୍ପନ୍ଦ। ଆମ୍ବ ଗଛ ପତ୍ରମାନଙ୍କରୁ ଟପ୍ ଟପ୍ ପାଣି ପଡୁଥାଏ। ସାର୍ କହିଲେ "ସତ୍ୟଭାମା, ଏ ପରିବେଶ କେମିତି ଲାଗୁଛି କହିଲ। ମୁଁ କିଛି ନ କହିଲାରୁ କହିଥିଲେ, "ଘରୁ ଝିଅ ବିଦା ହୋଇଗଲେ ଯେମିତି ଲାଗେ ସେମିତି ଲାଗୁଛି।" ମୋ ଜାଣିବାରେ ସାର୍‌ଙ୍କର ଝିଅ ନଥିଲେ। ମାତ୍ର ପ୍ରକୃତି ସହିତ ତାଙ୍କର ଏକାତ୍ମ ଭାବ ମୁଁ ସେଦିନ ଅନୁଭବ କରିଥିଲି।

ବିଭାଗୀୟ ମୁଖ୍ୟ ଥିଲେ ଡକ୍ଟର କୃଷ୍ଣ ଚନ୍ଦ୍ର ବେହେରା। ଆମ ହଷ୍ଟେଲକୁ ଲାଗି କରି ତାଙ୍କ କ୍ୱାର୍ଟର ଥିଲା। ତାଙ୍କ ଘରେ ଆମ ସମସ୍ତଙ୍କୁ (ଅନର୍ସର ଛାତ୍ରଛାତ୍ରୀ) ଡାକି ଖାଇବାକୁ ଦେଇଥିଲେ। ବେଳେବେଳେ ଟେଲିଭିଜନ ପରଦାରେ ତାଙ୍କର ସାକ୍ଷାତକାର ପ୍ରୋଗ୍ରାମ ଦେଖିଲେ ମନରେ ଏକ ଆତ୍ମୀୟତା ଭାବ ଆସେ। ସାର୍‌ଙ୍କୁ ସେଇଠି ନମ୍ର ପ୍ରଣିପାତ ଜଣାଏ। ସେ ଆଜି ଦିବଂଗତ। ଅନ୍ୟ ଅଧ୍ୟାପକମାନେ ଥିଲେ ଶ୍ରୀ ପୀତାମ୍ବର ସ୍ୱାଇଁ, ଶ୍ରୀ ନରେନ୍ଦ୍ର ବେହେରା, ଶ୍ରୀ କମଳାକାନ୍ତ ଲେଙ୍କା, ବେଲା ଦିଦି ଓ ଶ୍ରୀ ବୈଷ୍ଣବ ଚରଣ ବଳ। କେହି କେହି ପାର୍ଥୀବ ଜୀବନରୁ ଅବସର ନେଲେଣି ମୋତେ ଜଣାନାହିଁ। ସମସ୍ତଙ୍କ ଉଦ୍ଦେଶ୍ୟରେ ମୋର ସଭକ୍ତି ପ୍ରଣାମ।

ସ୍ମୃତିପଟରେ ଭାସି ଉଠନ୍ତି ଅନ୍ୟ ଏକ ଚେହେରା। ସହପାଠୀ ଶ୍ରୀ ସୁରେଶ ଚନ୍ଦ୍ର ପଣ୍ଡା। ବାଲେଶ୍ୱର ଫକୀରମୋହନ କଲେଜରୁ ଆସିଥାନ୍ତି। ତାଙ୍କର ପୃଥୁଳ ଚେହେରା, ନାଲି ନାଲି ଆଖି ଦେଖି ପ୍ରଥମେ ପ୍ରଥମେ ଭୟ ଲାଗିଥିଲା। ମାତ୍ର ତାଙ୍କ ଗମ୍ଭୀର ଚେହେରା ଭିତରେ ଯେ ଏକ ନମ୍ର, କମ୍ର ବନ୍ଧୁତା ଲୁଚି କରି ରହିଥିଲା ତାର ଆଭାସ ପରବର୍ତ୍ତୀ ଜୀବନରେ ପାଇଥିଲି। ବନ୍ଧୁ ଭାଗବତ (ଶ୍ରୀ ଭାଗବତ ପାତ୍ର, ଅର୍ଥନୀତିର ଛାତ୍ର ଥିଲେ, ବର୍ତ୍ତମାନ ଦିବଂଗତ)ଠାରୁ ଶୁଣିଲି ସୁରେଶ ଅଧ୍ୟାପକ ଚାକିରି ଛାଡ଼ି ବାଲେଶ୍ୱର କୋର୍ଟରେ ଓକିଲାତି କରୁଛନ୍ତି ଓ ତନ୍ତ୍ର ସାଧନା ମଧ୍ୟ କରୁଛନ୍ତି। ତନ୍ତ୍ର ସାଧନା ନାଁ ଶୁଣି ମୋର ଆଗ୍ରହ ଜନ୍ମିଲା ତାଙ୍କୁ ଭେଟିବାକୁ। ସନ୍ଧାନ ନେଇ ବାଲେଶ୍ୱର ଗଲୁ

ଓ ତାଙ୍କୁ ଭେଟିଲୁ ମଧ୍ୟ। ତାଙ୍କ ସାଧନ ସମ୍ପର୍କୀୟ କେତେକ ଅଲୌକିକ ଘଟଣା ସେ ମୋତେ କହିଥିଲେ। ତାଙ୍କ ଘରେ ଆମ ପାଇଁ ଚଣ୍ଡୀପାଠ କରିଥିଲେ। ମାତ୍ର ମା ଜଗଜ୍ଜନନୀ ନିରବ ରହି ଆମକୁ ପ୍ରାରବ୍ଧ ଭୋଗ କରିବା ପାଇଁ ବାଟ ଛାଡ଼ି ଦେଇଥିଲେ। ପରେ ମୋର ଦୁର୍ଦ୍ଦିନରେ ସେ ଅନେକ ସାନ୍ତ୍ୱନା ଦେଇ ଚିଠି ପଠାଇଥିଲେ। ତା'ପରେ ତାଙ୍କ ବିଷୟରେ ମୁଁ ଆଉ କିଛି ଜାଣି ନାହିଁ।

ଡକ୍ଟର ରାମଚନ୍ଦ୍ର ନାୟକ, ନିଷ୍ଠାପର ସାହିତ୍ୟ ସାଧକ, ଲୋକପ୍ରିୟ ଶିଶୁ ସାହିତ୍ୟିକ, ବହୁ ସରକାରୀ ଓ ବେସରକାରୀ ସଂସ୍ଥା ଦ୍ୱାରା ଜଣେ ସମ୍ମାନିତ ବ୍ୟକ୍ତିତ୍ୱ। ପ୍ରସିଦ୍ଧ ସ୍କନ୍ଦ ପୁରାଣର ବୈଷ୍ଣବ ଖଣ୍ଡକୁ ସେ ଓଡ଼ିଆ ଭାଷାରେ ଅନୁବାଦ କରିଛନ୍ତି। ତାଙ୍କ ସହ ଦୁଇ ବର୍ଷ ଓଡ଼ିଆ ଅନର୍ସ କ୍ଲାସରେ ପାଠ ପଢ଼ିଛି। ତାଙ୍କ ହୃଦୟରେ ମୋ ପ୍ରତି ଏତେ ସ୍ନେହ ସାଇତା ହୋଇ ରହିଛି ବୋଲି ଦୀର୍ଘ ଏକଚାଳିଶ ବର୍ଷ ପରେ ପରିଚୟ ପାଇଲି, ଯେତେବେଳେ ତାଙ୍କ ସହ ଦେଖା ହେଲା। ଆଶ୍ଚର୍ଯ୍ୟ ହେଲି ତାଙ୍କର ବୟାନ ଶୁଣି। ସେ ମୋତେ ବହୁତ ଖୋଜିଛନ୍ତି। ମୋର ଜଣେ ସମ୍ପର୍କୀୟ ଭାଇ (୰କୁଳମଣି ନାଥଶର୍ମା)କୁ ମୋ ଠିକଣା ଦେବା ପାଇଁ ଅନୁରୋଧ କରିଛନ୍ତି, ଜଗନ୍ନାଥ ମନ୍ଦିରରେ ମୋ ସହ ଭେଟ କରାଇ ଦେବାପାଇଁ ପ୍ରାର୍ଥନା କରିଛନ୍ତି। ଏପରିକି ପୁରୀ ମନ୍ଦିରରେ ମୋ ଚେହେରାର ସାଦୃଶ୍ୟ ଥିବା ଅନ୍ୟ ଜଣେ ସ୍ତ୍ରୀ ଲୋକଙ୍କ ମୁହଁକୁ ଚାହିଁ ଅପ୍ରସ୍ତୁତ ହୋଇଛନ୍ତି ମଧ୍ୟ। ସେହି ଜଗନ୍ନାଥଙ୍କ କୃପାରୁ ତାଙ୍କ ସହ ଅଚାନକ ଭେଟହେଲା। ଏବେ ଭୁବନେଶ୍ୱର ଆସିଲେ ମୋତେ ଦେଖା କରିବା ତାଙ୍କ ଯୋଜନାର ଏକ ଅଂଶ ପାଲିଟିଛି। ତାଙ୍କ ଘର କେନ୍ଦୁଝର ଅତାସାହି। ମୁଁ ଥରେ ଟେଲିଫୋନ୍‌ରେ ପଚାରିଲି "ମା ତାରିଣୀଙ୍କ ପୀଠ ତମ ଘରଠାରୁ କେତେ ଦୂର?" ସେ କହିଲେ, "ଖରା ଗରମ କମିଲେ ମୁଁ ଯାଇ ତୋତେ ସାଙ୍ଗରେ ଆଣି ତାରିଣୀ ଦର୍ଶନ କରାଇ ପୁଣି ଛାଡ଼ିଦେଇ ଆସିବି। ତୋ ଭାଇର ଭଙ୍ଗା କୁଡ଼ିଆ ମଧ୍ୟ ଦେଖିଯିବୁ।" ମନେମନେ ଭାବିଲି ବିଶ୍ୱପିତା ସହୋଦର ଦେଇ ନାହାନ୍ତି ବୋଲି ଭ୍ରାତୃ ସ୍ନେହ ସର୍ବତ୍ର ସଜାଡ଼ି ରଖିଛନ୍ତି।

ବନ୍ଧୁ ଦୀନେଶ ଭଟ୍ଟାଚାର୍ଯ୍ୟଙ୍କର ଘର ଭଦ୍ରକ ଉପକଣ୍ଠରେ ଥିବା ଆହାରପଦା ଗ୍ରାମରେ। ସରକାରୀ ଚାକିରିରୁ ଅବସର ନେଇ ବର୍ତ୍ତମାନ ସେ

ଠାକୁର ଅନୁକୂଳଚନ୍ଦ୍ରଙ୍କର ମାର୍ଗରେ ଆଧ୍ୟାତ୍ମିକ ସେବାରତ। ସେତେବେଳେ ସେ ଭଦ୍ରକ କଲେଜରେ ଅର୍ଥନୀତିର ଛାତ୍ର ଥିଲେ। ବୈକୁଣ୍ଠ ବିଶ୍ୱାଳଙ୍କର ସେ ଥିଲେ ଅତି ଘନିଷ୍ଠ ବନ୍ଧୁ। ସେ କହନ୍ତି ତାଙ୍କ ମା' ତାଙ୍କର ପୁଅମାନଙ୍କ ସଂଖ୍ୟାରେ ବୈକୁଣ୍ଠ ବିଶ୍ୱାଳଙ୍କୁ ମିଶାଇ ସଂଖ୍ୟା ଗଣନା କରନ୍ତି। ଥରେ ଦୁର୍ଗା ପୂଜା ଦେଖିବାକୁ ସେ ତାଙ୍କ ଘରକୁ ଡାକିଥିଲେ। ବୈକୁଣ୍ଠ ବିଶ୍ୱାଳଙ୍କ ସହ ମୁଁ ଓ ମୋ ଭାଇ ଶ୍ରୀ ସୁରେଶ ଚନ୍ଦ୍ର ନାୟକ ମଧ୍ୟ ଯାଇଥିଲୁ। ତାଙ୍କ ଘରେ ଏକ ଅଭାବନୀୟ ଘଟଣା ଘଟିଲା। ଅଷ୍ଟମୀ ଦିନ ରାତିରେ ମୋ ଭାଇଙ୍କର ଅବସ୍ଥା ସଙ୍କଟାପନ୍ନ ହୋଇଗଲା। ଡାକ୍ତର ଡାକି ବାନ୍ତି କରାଇ ସାରା ରାତି ତାଙ୍କୁ ଜଗି ରହିବାକୁ ପଡ଼ିଲା। ଦୁର୍ଗା ପୂଜା ଦେଖିବେ କ'ଣ ସମସ୍ତେ ମା ଦୁର୍ଗାଙ୍କୁ ତାଙ୍କ ଜୀବନ ଭିକ୍ଷା କରି ପ୍ରାର୍ଥନାରେ କଟାଇଲେ। ଶେଷରେ କାଳରାତ୍ରି ଅପସରି ଗଲା। ସଙ୍କଟ ଟଳିଲା। ସମସ୍ତେ ଆଶ୍ୱସ୍ତ ହେଲେ। ପରେ ମୁଁ ପଚାରିଲାରୁ କହିଥିଲେ ଆମ ଛୋଟ ଟିମ୍‌ରେ ସେ ନିଜକୁ ମୁଖ୍ୟ ବୋଲି ଅନୁଭବ କରି ପାରି ନଥିବାରୁ ଏକାବେଳେ ବହୁତଗୁଡ଼ିଏ ନିଦ ବଟିକା ଖାଇ ଦେଇଥିଲେ। ସେଦିନ ମୁଁ ଅନୁଭବ କରିଥିଲି ତାଙ୍କ ସ୍ୱାଭିମାନରେ ଆଞ୍ଚ ଆସିଲେ ସେ କି କାଣ୍ଡ କରିପାରନ୍ତି। ବନ୍ଧୁ ଦୀନେଶ ଭଟ୍ଟାଚାର୍ଯ୍ୟ ଜଣେ ସରଳ, ପରୋପକାରୀ, ଅମାୟିକ ବ୍ୟକ୍ତି। ବର୍ତ୍ତମାନ ମୁଁ ତାଙ୍କୁ ବନ୍ଧୁ ନୁହେଁ ଜଣେ ଆତ୍ମୀୟ, ସୁଖ ଦୁଃଖର ସାଥୀ ଭାବେ ଗ୍ରହଣ କରିଛି। ଅତୀତରେ ତାଙ୍କ ବନ୍ଧୁ ବୈକୁଣ୍ଠ ବିଶ୍ୱାଳଙ୍କ ଅବର୍ତ୍ତମାନରେ ସେ ମୋ ପାଖରେ ଛିଡ଼ା ହୋଇଛନ୍ତି। ମୋ ପିଲାମାନଙ୍କୁ ନିଜ ପିଲା ପରି ସ୍ନେହ ଆଦର ଢାଳି ଦେଇଛନ୍ତି। ଦୁର୍ଦ୍ଦିନରେ ପ୍ରାୟ ପ୍ରତିଦିନ ଆସନ୍ତି। ଘଣ୍ଟା ଘଣ୍ଟା ସମୟ ଦେଇ ନାନା ପ୍ରକାର ଆଲୋଚନା ମାଧ୍ୟମରେ ମୋ ମନକୁ ହାଲୁକା କରିବାକୁ ଚେଷ୍ଟା କରିଛନ୍ତି। ତାଙ୍କ ଆତ୍ମୀୟତା ନିକଟରେ ମୁଁ କୃତଜ୍ଞ।

ହେ ଭଦ୍ରକ କଲେଜ, ମୋର ସ୍ମୃତି ସୌଧ, ତୁମ ମସ୍ତକରେ ଶୋଭା ପାଉଛି ଆଦର୍ଶ "Let noble thoughts come from every side." ତୁମ ଆଦର୍ଶରେ ଅନୁପ୍ରାଣିତ ହୋଇ ମୁଁ ଆଜି ବିଶ୍ୱ ଜନନୀଙ୍କୁ ପ୍ରାର୍ଥନା କରୁଛି "Let noble thoughts come to my heart."

●●●

# ବନ୍ଧବାହାଲ

ମନେପଡ଼େ ଏକ ରୋଚକ କାହାଣୀ। ମହାକବି କାଳିଦାସଙ୍କର ବିଦ୍ୟା ନଗରୀରେ ପ୍ରବେଶକୁ ମା ବାଗ୍‌ଦେବୀ ବାରଣ କରିଥିଲେ। କାଳିଦାସ କିନ୍ତୁ ବିଦ୍ୟାନଗରୀକୁ ଯାଇଥିଲେ ଏବଂ ଅନୁଭବ କରିଥିଲେ ମା'ଙ୍କର ନିଷେଧାଜ୍ଞାର ସତ୍ୟାସତ୍ୟ। ବୟସ ଭାରରେ ଆନତ ଏକ ବୃଦ୍ଧାଙ୍କୁ ଦେଖି ପ୍ରଶ୍ନ କରିଥିଲେ ମହାକବି,"ମାଉସୀ କ'ଣ ଖୋଜୁଛୁ ?" ବୁଢ଼ୀଟିର ଉତ୍ତର ଥିଲା ଅତି ସରଳ। ବୁଢ଼ୀ କହିଲା, "ଏଇ ସଡ଼କର ଦୁଇ ମୁଣ୍ଡରେ ମୋର ବାପଘର ଓ ଶାଶୁଘର ଗାଁ। ଜୀବନସାରା ମୁଁ କେବଳ ଏଇ ରାସ୍ତା ଦେଇ 'ବାପଘରୁ ଶାଶୁଘରକୁ ଓ ଶାଶୁଘରୁ ବାପଘରକୁ ଯାଆସ କରିଛି। ତେଣୁ ଏଇ ବାଟରେ କେଉଁଠି ମୋର ଯୌବନଟା ହଜି ଯାଇଛି, ମୁଁ ତାକୁହିଁ ଖୋଜୁଛି।" ସ୍ତବ୍ଧ ହୋଇ ଯାଇଥିଲେ ମହାକବି। ସୁଦୂର ସୁନ୍ଦରଗଡ଼ ଜିଲ୍ଲାର ଏକ ସୀମାନ୍ତ ଅଞ୍ଚଳରେ ପାହାଡ଼ ଜଙ୍ଗଲ ଘେରା ଆଦିବାସୀ ବହୁଳ ଛୋଟ ଗାଁଟିଏ 'ବନ୍ଧବାହାଲ'। ସେହି ବନ୍ଧବାହାଲ ଗାଁରେ ମୁଁ ଛାଡ଼ି ଦେଇ ଆସିଛି ଜୀବନର ପଚିଶଟି ବସନ୍ତ। ୧୯୭୪ ମସିହାରେ ବନ୍ଧବାହାଲକୁ ଯିବା ପାଇଁ ରାସ୍ତାଘାଟ ସୁଗମ ନଥିଲା। ସୁନ୍ଦରଗଡ଼ରୁ ଯଶପୁର(ମ.ପ୍ର.) ବସ୍‌ରେ ଗଲେ ତେଲିଯୋରଠି ଓହ୍ଲାଇ ୩/୪ କି.ମି. ବାଟ ଚାଲି ଚାଲି ଯିବାକୁ ହୁଏ। ମଝିରେ ଇବ୍ ନଦୀ ପାର ହେବାକୁ ପଡ଼େ। ଆଜିକାଲି ଆଉ ସେ ଅସୁବିଧା ନାହିଁ। ଏମିତି ଏକ ଦୁର୍ଗମ ଅଞ୍ଚଳରେ ମୁଁ କେମିତି ଯାଇ ରହିଲି ବର୍ତ୍ତମାନ ଭାବିଲେ ଆଶ୍ଚର୍ଯ୍ୟ ଲାଗେ। ମାତ୍ର ତାହାହିଁ ଥିଲା ମୋ ପାଇଁ ବିଧି ନିର୍ଦ୍ଦିଷ୍ଟ। ୧୯୭୩-୭୪ ମସିହାରେ ମୁଁ ସମ୍ବଲପୁର Govt. Training କଲେଜରେ ବି.ଏଡ୍. ଟ୍ରେନିଂ ନେଉଥିଲି। ସେତେବେଳେ ସମ୍ବଲପୁରରେ ଶ୍ରଦ୍ଧେୟ ଶରତ ଚନ୍ଦ୍ର ମହାପାତ୍ର (ପେଣ୍ଠପାଳ) ଚାକିରି କରୁଥିଲେ। ଆମେ ଦୁହେଁ ସାଙ୍ଗ ହୋଇ ବନ୍ଧବାହାଲ କେମିତି ଜାଗା, ସ୍କୁଲ କେମିତି ଇତ୍ୟାଦି ଦେଖି ଆସିବାକୁ ଯାଇଥିଲୁ। ମାତ୍ର ରାସ୍ତାଘାଟ ସମ୍ପର୍କରେ ଅବଗତ ହେଲା ପରେ ଅଧବାଟରୁ ଫେରି ଆସିଥିଲୁ। ପରେ ପୁଣି

ସେହି ଜାଗାକୁ ମୋତେ ଯିବାକୁ ହୋଇଥିଲା । ତେଣୁ ତାହାହିଁ ମୋ ପାଇଁ ନିର୍ଦ୍ଦିଷ୍ଟ ଥିଲା ବୋଲି ମୁଁ ଭାବେ । ଅଗମ୍ୟ ଦୁର୍ଗମ ହେଲେ ମଧ ଗାଁଟିର ପରିବେଶ ଥିଲା ଆକର୍ଷଣୀୟ । ପରିଷ୍କାର ପରିଚ୍ଛନ୍ନ ଚଉଡ଼ା ରାଜରାସ୍ତାର ଦୁଇ କଡ଼ରେ ଖପର ଛାଉଣୀ ଘରଗୁଡ଼ିକ ଶୋଭା ପାଉଥିଲା । ଗାଁଟିରେ ଥିଲା ସରକାରୀ ହୋମିଓପାଥି ଡାକ୍ତରଖାନା, ଗ୍ରାମସେବକ କ୍ୱାଟର୍ସ, ଏଲ୍.ଆଇ. କ୍ୱାଟର୍ସ, ସରକାରୀ ରେଷ୍ଟ ହାଉସ୍ ଓ ଗୋଟିଏ ଜାଗାରେ ଗଢ଼ି ଉଠିଥିଲା ଚାରୋଟି ଶିକ୍ଷାନୁଷ୍ଠାନ ଯଥାକ୍ରମେ ଅପର ପ୍ରାଇମେରୀ ସ୍କୁଲ, ମ.ଇ. ସ୍କୁଲ, ଉଚ୍ଚ ବାଳକ ବିଦ୍ୟାଳୟ ଓ ଉଚ୍ଚ ବାଳିକା ବିଦ୍ୟାଳୟ । ପ୍ରାଇମେରୀ ସ୍କୁଲଟି ଥିଲା ସର୍ବ ପ୍ରାଚୀନ ୧୯୦୬ ମସିହାରେ ସ୍ଥାପିତ । ଗ୍ରାମବାସୀଗଣ ପନିପରିବା ଓ ଅନ୍ୟାନ୍ୟ ଆବଶ୍ୟକ ପଦାର୍ଥ ପାଇଁ ସାପ୍ତାହିକ ହାଟ ଉପରେ ନିର୍ଭରଶୀଳ ଥିଲେ । ମୁଁ ୧୯୭୪ ମସିହା ଜୁଲାଇ ମାସରେ ବାଳିକା ବିଦ୍ୟାଳୟରେ ଯୋଗ ଦେଇଥିଲି । ସେତେବେଳେ ସ୍କୁଲର ଅବସ୍ଥା ଭଲ ନଥିଲା, ଛାତ୍ରୀ ସଂଖ୍ୟା ଅତି କମ୍ ଥିଲା । ଆମେ ଥିଲୁ ୯ ଜଣ ଶିକ୍ଷୟିତ୍ରୀ । ବେଳେବେଳ ଆମ ୯ ଜଣଙ୍କ ପାଇଁ ୯ଟି ପିଲା ମଧ ନଥାନ୍ତି । ଅର୍ଥାତ୍ ସ୍କୁଲଟିରେ ୬ଷ୍ଠ ଶ୍ରେଣୀଠାରୁ ଥିଲେ ମଧ ଛାତ୍ରୀମାନଙ୍କର ଉପସ୍ଥାନ ୯ରୁ କମ୍ ଥାଏ । ସ୍କୁଲର ଏ ପ୍ରକାର ଅବସ୍ଥା, ପୁଣି ଗ୍ରାମବାସୀଙ୍କର ଭାଷା ବୁଝିବା ମୋ ପକ୍ଷେ କଷ୍ଟକର ଥିଲା । ତା'ଛଡ଼ା ଗାଁଟିରେ ଡାଲି, ଆଳୁ ବ୍ୟତୀତ ଅନ୍ୟ କିଛି ପରିବାପତ୍ର ମିଳୁ ନଥିଲା । ଏମିତି ପରିସ୍ଥିତିରେ ପ୍ରଥମେ ହତାଶ ହୋଇଥିଲି । ରହିବିକି ନାହିଁ ଦ୍ୱନ୍ଦ୍ୱରେ ଥିଲି । ମାତ୍ର ଗାଁର ମୁଖ୍ୟ 'ଗଉଁଟିଆ' ୰ଶ୍ରୀ ଜୟତରାମ କାଲୋଙ୍କର ତ୍ୟାଗପୂତ ବ୍ୟକ୍ତିତ୍ୱ ମୋତେ ସେ 'ବନ୍ଧବାହାଲ'ରେ ବାନ୍ଧି ରଖିଥିଲା । ତାଙ୍କ ସମ୍ପର୍କରେ ଯାହା ଶୁଣିଲି ସେ ଥିଲେ ଗାଁର ଜମିଦାର । ସ୍କୁଲଟି ତାଙ୍କର ପ୍ରଦତ୍ତ ଜମି ଉପରେ ପ୍ରତିଷ୍ଠିତ । ଶିକ୍ଷୟିତ୍ରୀମାନେ ରହିବା ପାଇଁ ସେ ତାଙ୍କରି ଘରେ ସ୍ୱତନ୍ତ୍ର ବ୍ୟବସ୍ଥା କରିଥିଲେ ।

ପ୍ରଥମେ ସେ ଥିଲେ ମଧ ଇଂରାଜୀ ସ୍କୁଲର ପ୍ରଧାନ ଶିକ୍ଷକ । ମାତ୍ର ରାଜନୀତିରେ ପ୍ରବେଶ କରି ପ୍ରଧାନ ଶିକ୍ଷକ ପଦବୀ ତ୍ୟାଗ କରିଥିଲେ । ଗଙ୍ଗାଧର ପ୍ରଧାନଙ୍କଠାରୁ ଭୋଟରେ ପରାସ୍ତ ହୋଇ ରାଜନୀତିରୁ ଅବସର ନେଇଥିଲେ ଏବଂ ନିଜ ଅଞ୍ଚଳରେ ଶିକ୍ଷାର ବିକାଶ ଦିଗରେ ମନପ୍ରାଣ ଢାଳି ଦେଇଥିଲେ । ଆମ ସ୍କୁଲରେ କେହି କିରାଣୀ ନଥିଲେ । ସ୍କୁଲର ସମସ୍ତ

କାଗଜପତ୍ର କାମ ସେ ନିଜେ ଅବୈତନିକ ଭାବେ କରୁଥିଲେ। ତାଙ୍କର ବ୍ୟକ୍ତିତ୍ୱ ସମ୍ପର୍କରେ ଦୁଇଟି ଉଦାହରଣ ଦେଇ ତାଙ୍କ ପ୍ରତି ମୋର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି। ସୁନ୍ଦରଗଡ଼ ସର୍କଲ ଇନିସ୍‌ପେକ୍ଟର ଅଫିସ୍‌କୁ ଯେବେ ସେ ସ୍କୁଲ କାମରେ ଯାଆନ୍ତି, ସି.ଆଇ. ଅଫିସ୍‌ର କିରାଣୀମାନେ ରାଜା ଆସିଛନ୍ତି କହି ତାଙ୍କଠାରୁ ଜଳଖିଆ ଖାଇବାକୁ ଅଡ଼ି ବସନ୍ତି। ମୁହଁରେ ସ୍ମିତ ହସ ବ୍ୟତୀତ ତାଙ୍କଠାରୁ କୌଣସି ପ୍ରତିବାଦ ଶୁଣା ଯାଏନାହିଁ। ଅନ୍ୟ ଏକ ଘଟଣା ମୋ ମନକୁ ଗଭୀର ଭାବେ ଛୁଇଁଥିଲା। ତାହା ଏହିପରି - ସେ ମହାତ୍ମାଙ୍କର ଅକାଳ ବିୟୋଗ ଘଟିଥାଏ। ତାଙ୍କ ଘର ସମ୍ମୁଖ ପ୍ରଶସ୍ତ ବାରଣ୍ଡାରେ ମୁଁ ବସିଥାଏ। ମୋ ସହିତ ଥାଆନ୍ତି ତାଙ୍କର ଧର୍ମପତ୍ନୀ, ଯାହାଙ୍କୁ ଆମ୍ଭେମାନେ 'କାକୀ' ବୋଲି ଡାକୁଥିଲୁ। ଜଣେ ହିନ୍ଦୁସ୍ଥାନୀ ସନ୍ନ୍ୟାସୀ ସେଠାକୁ ଆସି ତାଙ୍କୁ ଖୋଜିଲେ ଏବଂ କହିଲେ ବହୁତ ବର୍ଷ ତଳେ ଥରେ ସେ ଆସିଥିଲେ ଏବଂ ସେ ମହାତ୍ମାଙ୍କର ଆତିଥ୍ୟରେ ସେ ଏତେ ପ୍ରୀତ ହୋଇଥିଲେ ଯେ ତାଙ୍କୁ ଭୁଲି ପାରି ନାହାନ୍ତି। କାକୀ କିଛି କହି ନପାରି ଭିତରକୁ ଚାଲିଗଲେ। ମୁଁ ଯେତେବେଳେ ତାଙ୍କର ଅବର୍ତ୍ତମାନ କଥା ଶୁଣାଇଲି ସନ୍ନ୍ୟାସୀ ଜଣଙ୍କ କୌଣସି ଭିକ୍ଷା ଗ୍ରହଣ ନକରି ଏକମୁହାଁ ହୋଇ ଚାଲି ଯାଇଥିଲେ। ସନ୍ଧ୍ୟା ହେଲେ ସେ ଗାଁର 'ଘୋଷକ' ରାଜରାସ୍ତାରେ ବଡ଼ପାଟିରେ କହି କହିଯାଏ "କାହାର ନାମ ଧରି ବାଟ ଚାଲିବା, 'ଜୟତରାମ', 'ଜୟତରାମ'।" ଉକ୍ତ ଘଟଣାରୁ ତାଙ୍କର ପବିତ୍ର ସ୍ୱଭାବ ଓ ଲୋକପ୍ରିୟତା ସହଜରେ ଅନୁମେୟ। ତାଙ୍କ ଦେହାନ୍ତ ସମୟରେ ଏମିତି ଅନୁଭବ ହୋଇଥିଲା ଯେମିତି ନିଜର ପିତୃ ବିୟୋଗ ଘଟିଛି।

ଗାଁଟିର ମଧ୍ୟ ଭାଗରେ ରାଜ ରାସ୍ତାକୁ ଲାଗି କରି ରହିଛି ଏକ ବିସ୍ତୃତ ପଡ଼ିଆ(ଗୋଚର)। ପଡ଼ିଆର ଗୋଟିଏ ଧାରରେ(ରାସ୍ତାକୁ ଲାଗି)ଧାଡ଼ି ଧାଡ଼ି ଆମ୍ବଗଛ ଶୋଭା ପାଉଛି। ପଡ଼ିଆଟି କେବଳ ପଶୁମାନଙ୍କର ଚାରଣ ଭୂମି ନୁହେଁ, ଏହା ଚାରୋଟିଯାକ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କର ଖେଳପଡ଼ିଆ ମଧ୍ୟ। ଏଇଠି ଅନୁଷ୍ଠିତ ହୁଏ ବିଦ୍ୟାଳୟଗୁଡ଼ିକର କ୍ରୀଡ଼ା ପ୍ରତିଯୋଗିତା। ବର୍ଷାଦିନେ ଘନ ସବୁଜ ଦୁବଘାସ ଗହଳରେ ନାଲି ଟୁକୁ ଟୁକୁ ସାଧବବୋହୂର ବିହାର ଅତ୍ୟନ୍ତ ରମଣୀୟ ଦୃଶ୍ୟ ସୃଷ୍ଟି କରେ। ପଡ଼ିଆର ଠିକ୍ ବିପରୀତ ଦିଗରେ ରହିଛି ଏକ ବିରାଟ ପୁଷ୍କରିଣୀ। ପୁଷ୍କରିଣୀଟିର ଆକାର ଆୟତନ

ମନ ଭିତରେ ଏକ କ୍ଷୁଦ୍ର ହ୍ରଦର ଭ୍ରମ ସୃଷ୍ଟି କରେ। ପୁଷ୍କରିଣୀ ଘାଟର ଗୋଟିଏ କଡ଼ରେ ଗହଳିଆ ପତ୍ର ଶୋଭିତ ଏକ ଅଶ୍ୱତ୍‌ଥ ବୃକ୍ଷ ଏବଂ ଆର କଡ଼ରେ ମଧ୍ୟମ ଉଚ୍ଚତା ବିଶିଷ୍ଟ ତୁଳସୀ ଚଉଁରାଟିଏ ବିଦ୍ୟମାନ। ଅନ୍ୟ ତିନିପଟ ହୁଡ଼ାରେ ଧାଡ଼ି ଧାଡ଼ି ଖଜୁରୀ ଗଛ। ପାନୀୟ ଜଳକୁ ଛାଡ଼ି ଗ୍ରାମବାସୀମାନଙ୍କର ଅନ୍ୟ ସମସ୍ତ ଆବଶ୍ୟକତା ପୁଷ୍କରିଣୀଟି ପୂରଣ କରିଥାଏ। ମୋଟ ଉପରେ ବନ୍ଧବାହାଲ ଗାଁଟି ମୋର ଏବଂ ମୋ ପିଲାମାନଙ୍କ ଜୀବନରେ ଏକ ସ୍ମୃତିତୀର୍ଥ। ସେଇଠି ମୋ ପୁଅ ଜନ୍ମ ହୋଇଛି। ସେଇ ପ୍ରାଥମିକ ବିଦ୍ୟାଳୟରେ ମୋ ପୁଅଝିଅଙ୍କର ଶିକ୍ଷାର ମୂଳଦୁଆ ତିଆରି ହୋଇଛି। ସେଇଠି କଟିଛି ତାଙ୍କର ବାଲ୍ୟ ଜୀବନ। ଅପାଶୋରା ତାର ଛବି ଏବଂ ଅପାଶୋରା ତାର ସ୍ମୃତି। ୨୦୦୮ ମସିହାରେ ଭାରତ ସରକାରଙ୍କର ଲୋକସେବା ଆୟୋଗ ପରୀକ୍ଷା ଦେଇଥିଲା ମୋପୁଅ। "କୈଶୋରର ସ୍ମୃତି" ପ୍ରଶ୍ନର ଉତ୍ତର ଲେଖିଲା ବେଳେ ତାର ଦୃଷ୍ଟିପଥାରୁଢ଼ ହୋଇଥିଲା ସେଇ ବନ୍ଧବାହାଲ ଗାଁ ଏବଂ ଲୁହ ଛଳଛଳ ଆଖିରେ ଉତ୍ତର ଲେଖିଥିଲା ବୋଲି ସେ ମୋତେ କହିଛି। କେତେ ବାଲ୍ୟସ୍ମୃତିର ସ୍ୱାକ୍ଷର ସେଇ ଛୋଟ ଗାଁଟି ବହନ କରିଛି ମୋ ପୁଅଝିଅଙ୍କର ଓ ଆଜୀବନ ବହନ କରି ଚାଲିଥିବ ମଧ୍ୟ।

ସେଇ ଗାଁରେ ପରିଚୟ ହେଲା ମୋର ଅନ୍ୟ ଜଣେ ବ୍ୟକ୍ତିଙ୍କ ସହିତ। ସେ ହେଉଛନ୍ତି ଡକ୍ଟର ସୁଦର୍ଶନ ପରିଡ଼ା। ହୋମିଓପାଥି ଡାକ୍ତରଖାନାକୁ ପ୍ରଥମ କରି ଆସିଥାନ୍ତି। ତାଙ୍କ ସହ ପରିଚୟ ହେଲା ପରେ ଜଣା ପଡ଼ିଲା ସେ ଭଦ୍ରକ କଲେଜର ଛାତ୍ର ଥିଲେ। କ୍ରମେ ଆତ୍ମୀୟତା ବଢ଼ିଲା। ମୋତେ ସେ 'ନୂଆବୋଉ' ବୋଲି ଡାକନ୍ତି। ବନ୍ଧବାହାଲ ଗାଁକୁ ସତେ ଯେମିତି ସେ ମୋ ପାଇଁ ଦେବଦୂତ ହୋଇ ଆସିଥିଲେ। ତାଙ୍କର ଅକୃତ୍ରିମ ସାହାଯ୍ୟର ଋଣ ମୁଁ ଜନ୍ମାନ୍ତରେ ମଧ୍ୟ ଶୁଝି ପାରିବି ନାହିଁ। ମୋ ପୁଅର ଜନ୍ମ ହେବା ଘଟଣା ଏକ ଅଲୌକିକ ଘଟଣା ଭଳି ମୋତେ ଲାଗେ। ବନ୍ଧବାହାଲରେ ମୁଁ ଏକା ରହୁଥିଲି ପିଲା ଦୁଇଟିଙ୍କୁ ଧରି।

ତାଙ୍କର ଆତ୍ମୀୟତା, ତାଙ୍କର ସାହାଯ୍ୟକୁ ମନେପକାଇଲେ ମୋର ମନେହୁଏ ସେ ଯେମିତି ଈଶ୍ୱର ପ୍ରେରିତ ହୋଇ ବନ୍ଧବାହାଲ ଯାଇଥିଲେ ମୋତେ ସାହାଯ୍ୟ କରିବା ପାଇଁ। ତାଙ୍କର ମା' ଇହଧାମରେ ନଥିଲେ। ମୋ ଭିତରେ ସେ କି ମମତା ପାଇଲେ ଯେ ସେ କହନ୍ତି ସେ ମୋର ବଡ଼ପୁଅ।

ମୋତେ 'ନୂଆବୋଉ' ଡାକୁଥିଲେ, ଏବେ ମଧ୍ୟ ଡାକୁଛନ୍ତି । ମାତ୍ର 'ନୂଆବୋଉ'ରୁ 'ବୋଉ'ର ମାନ୍ୟତା ଦେଇ ଆଜି ଯାଏ ବାନ୍ଧି ରଖିଛନ୍ତି । ଚାକିରି ସରିଲା ପରେ ମୟୂରଭଞ୍ଜର ଉଦଳାରେ ରହୁଛନ୍ତି । ଉଦଳାରେ ଘର କରିଛନ୍ତି । ତାଙ୍କ ସହିତ ମୋର ସମ୍ପର୍କ ବହୁ ପୂର୍ବ ଜନ୍ମର ବୋଲି ହୃଦ୍‌ବୋଧ ହୁଏ । ତାଙ୍କର ସର୍ବାଙ୍ଗୀନ ମଙ୍ଗଳ କାମନା କରୁଛି ।

ବନ୍ଧବାହାଲ ଛାଡ଼ିଲି ୧୯୯୯ ମସିହାରେ । ୧୯୯୮ ମସିହାରେ ମୋ ଜୀବନ ଆକାଶରେ ଅକାଳ ବଉଦ ମାଡ଼ି ଆସିଲା । ପିଲା ଦୁଇଟି ପିତୃହରା ହୋଇଗଲେ । ମୁଁ ବନ୍ଧବାହାଲରୁ ବିଦାୟ ନେଇ ବାଳକାଟିର ପ୍ରତାପଶାସନ ହାଇସ୍କୁଲ ପରିବାର ଭିତରେ ମିଶିଗଲି ।



# ପ୍ରତାପଶାସନ ହାଇସ୍କୁଲ

ସ୍କୁଲର ପବିତ୍ର ପ୍ରାଙ୍ଗଣ ସ୍ପର୍ଶ କରିବା ଆଗରୁ ମନ ଥିଲା ଆଶଙ୍କିତ। ଏକେ ତ ବୟଜ୍ (Boys') ସ୍କୁଲ, ଦ୍ୱିତୀୟରେ ସହରାଞ୍ଚଳ ସ୍କୁଲ। କେମିତି ହୋଇଥିବ ତାର ପରିବେଶ, ହେଡ୍‌ମାଷ୍ଟର କେମିତି ମିଜାଜ୍‌ର ହୋଇଥିବେ, ମୋତେ Join କରିବାକୁ ଅନୁମତି ଦେବେ କି ନାହିଁ। ଏମିତି ନାନା ଭାବନା ମନକୁ ଆନ୍ଦୋଳିତ କରୁଥିଲା। ମାତ୍ର ଅଫିସ୍ ଭିତରେ ମୋର ଭାବପ୍ରବଣତା ଅବସ୍ଥା ଲକ୍ଷ୍ୟ କରି ହେଡ୍‌ମାଷ୍ଟର କହିଲେ, "ଆପଣଙ୍କର ଏଠି କୌଣସି ଅସୁବିଧା ହେବ ନାହିଁ, ଆପଣଙ୍କ ବିଷୟରେ ଇନିସ୍‌ପେକ୍ଟର ମୋତେ ସବୁକଥା କହିଛନ୍ତି।" ଆଶ୍ୱସ୍ତ ହେଲି ତାଙ୍କର ଆଶ୍ୱାସନା ଭରା ସ୍ୱାଗତିକାରେ। ସହକର୍ମୀ ଭାଇ ଭଉଣୀମାନେ ମୋ ଦୁଃଖରେ ସମବେଦନା ଜଣାଇଲେ। ମୋତେ ସ୍ନେହ, ସମ୍ମାନ ଦେଇ ଆପଣେଇ ନେଲେ। କ୍ରମେ ସ୍କୁଲଟି ନିଜର ଲାଗିଲା। ବନ୍ଧବାହାଲର ଛବି ଅସ୍ପଷ୍ଟ ହେଲା।

ସ୍କୁଲ ପରିଚାଳନା ଦାୟିତ୍ୱ ହେଉ କିମ୍ୱା ମାଟ୍ରିକ୍ୟୁଲେସନ ବୋର୍ଡ଼ ପରୀକ୍ଷାର ଦାୟିତ୍ୱ ହେଉ ସମସ୍ତ ଗୁରୁତ୍ୱପୂର୍ଣ୍ଣ ସମସ୍ୟା ସମାଧାନରେ ସହକର୍ମୀମାନଙ୍କର ସହଯୋଗ ଅବିସ୍ମରଣୀୟ। କ୍ରମେ ସମ୍ପର୍କ ସହକର୍ମୀରୁ ବ୍ୟକ୍ତିଗତ ସମ୍ପର୍କର ରୂପ ନେଲା। ଏବେ ସମସ୍ତଙ୍କ ସହିତ ମୋର ସମ୍ପର୍କ ଆତ୍ମୀୟତାପୂର୍ଣ୍ଣ ଓ ସୁଦୃଢ଼ ଅଛି।

ବାଳକାଟି ସ୍କୁଲରେ ଜ୍ୟେଷ୍ଠ ଭ୍ରାତୃପ୍ରତିମ ସହକର୍ମୀମାନଙ୍କ ସହିତ ବିଭିନ୍ନ କଥା ଆଲୋଚନା ହୁଏ। ଧୀରେ ଧୀରେ ସଂସାରର ଅସାରତାକୁ ଅନୁଭବ କଲି। ଜୀବନର ଲକ୍ଷ୍ୟ ପ୍ରତି ସଚେତନ ହେଲି। ଜୀବନର ଚତୁର୍ଥ ପାହାଚରେ ସ୍କୁଲଟି ଯେମିତି ଥିଲା ମୋ ପାଇଁ ବୈରାଗ୍ୟର ମନ୍ତ୍ରଦାତା। ସମୟ ତା ଧର୍ମ ରକ୍ଷା କରି ଆଗେଇ ଚାଲିଛି। ଚାହୁଁ ଚାହୁଁ ଗୋଟିଏ ଦଶନ୍ଧି ଅତିକ୍ରାନ୍ତ ହୋଇଗଲା। ମୋର ଚାକିରି ଜୀବନର ଅବସାନ ଘଟିଲା।

ବର୍ତ୍ତମାନ ମୁଁ ଭୁବନେଶ୍ୱର ଟଙ୍କପାଣି ରୋଡରେ ରହୁଛି। ଏହା ମୋର ଗୁରୁକୃପା ଓ ଗୁରୁ ପ୍ରଦତ୍ତ ଆଶ୍ରୟ ସ୍ଥଳ। ନିଃସଙ୍ଗ ଜୀବନରେ, ଲୋକଶିକ୍ଷା ପାଇଁ ପରମ ପୁରୁଷ ଶ୍ରୀକୃଷ୍ଣଙ୍କ ଜୀବନ ଯାତ୍ରା ସହିତ ମୋର କ୍ଷୁଦ୍ର ଜୀବନକାଳକୁ ମନେମନେ ତୁଳନା କରୁଛି। ଜନ୍ମସ୍ଥଳୀ ମଥୁରା, କ୍ରୀଡ଼ାସ୍ଥଳୀ ଗୋପ, ବୃନ୍ଦାବନ, କର୍ମସ୍ଥଳୀ ଦ୍ୱାରିକା, ଧର୍ମସ୍ଥଳୀ କୁରୁକ୍ଷେତ୍ର ଓ ମୁକ୍ତସ୍ଥଳ ପ୍ରଭାସ ଭଳି, ମୋ ଜୀବନର କ୍ଷୁଦ୍ର ସ୍ରୋତଟି ଆଗେଇ ଚାଲିଛି ଚଣ୍ଡିଆଗଡ଼ି, ତରଡ଼ିପାଳ, ନାହିଆଡିଆ, ବନ୍ଧବାହାଲ ଓ ଭୁବନେଶ୍ୱରରୁ ସ୍ୱର୍ଗଦ୍ୱାର ଅଭିମୁଖେ।

●●●

# ବୈକୁଣ୍ଠ ବିଶ୍ୱାଳ

ବୈକୁଣ୍ଠ ବିଶ୍ୱାଳ, ସେ ଏକ ବିରଳ ବ୍ୟକ୍ତିତ୍ୱ। ସେ ବ୍ୟକ୍ତିତ୍ୱକୁ ପୂର୍ଣ୍ଣ ଭାବରେ ବ୍ୟକ୍ତ କରିବା ମୋର ସାଧ୍ୟାତୀତ, ଯେମିତି କ୍ଷୁଦ୍ର ତଟିନୀ ଧାରଟିଏ ଅତଳ ବାରିଧିର ଗଭୀରତାକୁ ଆକଳନ କରିବାରେ ଅସମର୍ଥ ହୋଇଥାଏ। ତାଙ୍କର ସ୍ୱଚ୍ଛ ଜୀବନକାଳ ମଧ୍ୟରେ ମୋର ଅଙ୍ଗେ ଲିଭା କେତେକ ସ୍ମୃତି ମାତ୍ର ମୁଁ ପ୍ରକାଶ କରୁଛି। ତାଙ୍କୁ ମୁଁ ପ୍ରଥମେ ଭେଟିଥିଲି ଜୟହିନ୍ଦ୍ ହାଇସ୍କୁଲର ଅଷ୍ଟମ ଶ୍ରେଣୀରେ ମୋର ଜଣେ ସହପାଠୀ ଭାବରେ। ନିୟତିର ବିଚିତ୍ର ବିଧାନରେ ତାଙ୍କ ସହ ବାନ୍ଧି ହେଲି ଭିନ୍ନ ଏକ ସମ୍ପର୍କରେ। (ଜୀବନସାଥୀ ରୂପରେ)। ତାଙ୍କ ଚରିତ୍ରର ବହୁଦିଗ ମଧ୍ୟରୁ ଯେଉଁ ଦିଗଟି ମୋତେ ଆକୃଷ୍ଟ କରିଥିଲା ସେଥିରେ ମୁଁ ମୋ ଆଶାନୁରୂପ ସଫଳତା ପାଇ ପାରି ନଥିଲି। ତାଙ୍କର ଅବର୍ତ୍ତମାନରେ ସେ ଦିଗଟିର ଦୁର୍ବଳତା, ତୃଟି (ମୋ ଦୃଷ୍ଟିରେ) ପ୍ରକାଶ କଲାବେଳେ ତାଙ୍କ ପ୍ରତି ଯଦି ଅସମ୍ମାନ କରୁଥାଏ ତା'ହେଲେ ସେ ଅମର ଆତ୍ମାଙ୍କୁ ମୁଁ ପ୍ରଥମେ କ୍ଷମା ପ୍ରାର୍ଥନା କରୁଛି। ଆମେ ଦୁହେଁ ବିବାହ ବନ୍ଧନରେ ଆବଦ୍ଧ ହୋଇଥିଲୁ ୧୯୭୫ ମସିହା ଜୁଲାଇ ୧୩ ତାରିଖ ଦିନ। ଏ ବିବାହ ଏକ ସାଧାରଣ ବିବାହ ନଥିଲା। ସେ ସମୟରେ ସୁଦୂର ମଫସଲ ଅଞ୍ଚଳରେ କଠୋର ଜାତିପ୍ରଥା ବିରୁଦ୍ଧରେ ଏହା ଥିଲା ଏକ ଐତିହାସିକ ବିଜୟ। ବିବାହ ପରେ ମୁଁ ଅନୁଭବ କରିଥିଲି ଗୃହସ୍ଥାଶ୍ରମର ସଂକୀର୍ଣ୍ଣ ଗଣ୍ଡି ଭିତରେ ଆବଦ୍ଧ ହେବା ଭଳି ବ୍ୟକ୍ତି ସେ ନଥିଲେ। ତାଙ୍କର ଉଚ୍ଚ ଚିନ୍ତା, ମାନବପ୍ରୀତି, ସାଧାରଣ ଜନ ଜୀବନ ପ୍ରତି ଶ୍ରଦ୍ଧା ଓ ନିଃସ୍ୱାର୍ଥପର ଜୀବନଶୈଳୀ ସହିତ ମୁଁ ସହଯୋଗ କରି ପାରି ନଥିଲି। ସାଧାରଣ ଝିଅଟିଏ ଯେମିତି ସୁଖମୟ ପାରିବାରିକ ଜୀବନ ଆଶା କରିଥାଏ ମୋର ମଧ୍ୟ ତାହାହିଁ ସ୍ୱପ୍ନ ଥିଲା। ମାତ୍ର ମୋର ସେ ସ୍ୱପ୍ନ ସାକାର ହୋଇ ପାରି ନଥିଲା। ବିଦ୍ୟା, ବୁଦ୍ଧି, ଜ୍ଞାନ, ଗରିମା ସବୁଥିରେ ସେ ପୂର୍ଣ୍ଣ ଥାଇ ମଧ୍ୟ ନିଜର ଭାଗ୍ୟ ନିକଟରେ

ହାରି ଯାଇଥିଲେ। ତାଙ୍କରି ପାଖରେ ମୁଁ ଅନୁଭବ କରିଥିଲି, "ଭାଗ୍ୟଂ ଫଳିତ ସର୍ବତ୍ର ନବିଦ୍ୟା ନଚ ପୌରୁଷମ୍।" ଜୀବିକାର୍ଜନ ପାଇଁ ସେ ଯେଉଁ ପନ୍ଥା ଅନୁସରଣ କରିଥିଲେ ସେଥିରେ ସଫଳତା ପାଇ ପାରି ନଥିଲେ। ଜୀବନର ସବୁ କ୍ଷେତ୍ରରେ ବିଫଳତାହିଁ ତାଙ୍କୁ ଭିନ୍ନ ମାର୍ଗକୁ (ମଦ୍ୟପାନ) ଟାଣି ନେଇଥିଲା ଯାହା ତାଙ୍କ ପାରିବାରିକ ଜୀବନର ସୁଖଶାନ୍ତିକୁ ସମ୍ପୂର୍ଣ୍ଣ ନଷ୍ଟ କରି ଦେଇଥିଲା। ମୋ ପ୍ରତି ଅନ୍ତରରେ ସ୍ନେହ, ଶ୍ରଦ୍ଧା, ଭଲ ପାଇବା ଥିଲେ ମଧ୍ୟ ତାଙ୍କର ଆର୍ଥିକ ଦୁଃସ୍ଥିତି ଓ ଉଦାସଭାବ ଯୋଗୁଁ ମୁଁ ତାହା ଅନୁଭବ କରିପାରୁ ନଥିଲି। ବେଳେବେଳେ ତାର ପରିପ୍ରକାଶ ଏମିତି ଘଟୁଥିଲା। ସେ ଝିଅକୁ କହୁଥିଲେ, "ଦୁନିଆଁରେ ମୁଁ କେବଳ ଜଣକୁ ହିଁ ଭୟ କରେ, ସେ ହେଉଛି ତୋ ବୋଉ।"

ଜୀବନ କାଳ ଭିତରେ ମୋତେ ଗାଳି ଦେବା ପାଇଁ ସେ ଗୋଟିଏ ମାତ୍ର ଶବ୍ଦ ପ୍ରୟୋଗ କରିଛନ୍ତି ଯାହାକୁ ମୁଁ ମୋଟେ ସହି ପାରୁ ନଥିଲି। ଶବ୍ଦଟି ହେଉଛି ଅନକଲଚଡ୍ (uncultured)। କୌଣସି ଆବଶ୍ୟକତା ପାଇଁ ସେ ଆମ(ମୁଁ, ପୁଅ, ଝିଅ) ଉପରେ ତାଙ୍କ ଇଚ୍ଛାକୁ ଲଦି ଦେଉ ନଥିଲେ। ଏପରିକି ଭୋକ ଲାଗୁଥିଲେ ବି ସେ ମୋତେ ଖାଇବାକୁ ଦେବାକୁ କହୁ ନଥିଲେ। ମୁଁ ଦିନେ ପଚାରି ଥିଲି "ତମକୁ ଭୋକ ଲାଗୁଛି, ଖାଇବାକୁ ଦେବାକୁ କାହିଁକି କହୁନାହଁ? ଉତ୍ତରରେ ସେ କହିଥିଲେ "ମୋ ବୋଉକୁ ତ ମୁଁ କେବେ କହିନାହିଁ, ତୋତେ କହିବା ତ ଦୂରର କଥା।" ବିଡ଼ି ଦରକାର ହେଲେ ସେ ପୁଅକୁ କହନ୍ତି, "ବାବୁ, ତୋର ଏବେ ବାହାରକୁ ଯିବାର ଅଛି କି? ଯଦି ଯିବୁ ଆସିଲାବେଳେ ବିଡ଼ି କଠାଏ ଆଣିଥିବୁ।"

ଏ ପ୍ରକାର ଚରିତ୍ର ସହିତ ବହୁତ ଜଗି ରଖି କିଛିଦିନ ଚଳିଥିଲି। ଯେତିକିଦିନ ତାଙ୍କ ସହିତ ମୁଁ ଏକାଠି କଟାଇଛି, କୌଣସି ବ୍ୟକ୍ତି ଚରିତ୍ରର ଦୁର୍ବଳତା ସେ ମୋ ଆଗରେ ପ୍ରକାଶ କରି ନାହାନ୍ତି (ଏପରିକି ତାଙ୍କ ସହ ଶତ୍ରୁତା ଆଚରଣ କରୁଥିବା ଲୋକର ମଧ୍ୟ) କିମ୍ବା ମୁଁ କେବେ ସେ ପ୍ରକାର ଆଲୋଚନା ପାଇଁ ଚେଷ୍ଟା କଲେ ସେ ମୋତେ ନିରୁତ୍ସାହିତ କରିଥାନ୍ତି। ଗୋଟିଏ ଉଦାହରଣ ଦେଲେ ସ୍ପଷ୍ଟ ହେବ। ଥରେ ସେ ଖଟ ଉପରେ ଶୋଇଥାନ୍ତି, ତଳେ ଝିଅ ଓ ମୁଁ ବସି କଥା ହେଲାବେଳେ, ଝିଅ ତା ମାଇଁମାନଙ୍କ କଥା କହୁଥିଲା। ହଠାତ୍ ସେ ମୋତେ କହିଲେ, "ଝିଅ ଯାହା ସବୁ କହୁଛି ତୁ ତାକୁ ଉପଭୋଗ କରୁଛୁ?" କଥା କ'ଣ ବୋଲି

ପଚାରିଲାରୁ କହିଲେ ସେ ତା ମାଇଁମାନଙ୍କ ବିରୁଦ୍ଧରେ ଗପୁଛି ତୁ ତାକୁ ପ୍ରଶ୍ରୟ ଦେଉଛୁ । ଆମେ ଦୁହେଁ ସଚେତନ ହୋଇ କଥା ବନ୍ଦ କଲୁ । ତାଙ୍କର ସ୍ୱଚ୍ଛ ଜୀବନ କାଳ ଭିତରେ ତାଙ୍କ ସହ ଏକତ୍ର ଜୀବନ ବିତାଇବାର ଅବଧି ଅତି ନଗଣ୍ୟ । ଶେଷ ବେଳକୁ ତାଙ୍କର ଡିପ୍ରେସନ୍, ଆଲକୋହଲ ପ୍ରତି ଦୁର୍ବଳତା, ସମ୍ପର୍କକୁ ଆହୁରି ଦୂରକୁ ନେଇ ଯାଇଥିଲା । ଥରେ ମୋ ପାଖକୁ ଗୋଟିଏ ଚିଠିରେ ସେ ଲେଖିଥିଲେ, "ତୋର ସବୁ ଦୁଃଖ, ଯନ୍ତ୍ରଣା, ରୋଗ, ଶୋକର କାରଣ ହେଉଛି ମୁଁ । ତା ସତ୍ତ୍ୱେ ତୁ ମନେ ରଖିବୁ ମୁଁ ୧୯୬୭ ମସିହାରେ ଯାହା ଥିଲି ଆଜି ମଧ୍ୟ ସେଇଆ ଅଛି ।" ଏହା ଥିଲା ମୋ ପ୍ରତି ତାଙ୍କ ହୃଦୟରେ ଥିବା ସ୍ନେହ, ଶ୍ରଦ୍ଧା ଓ ଭଲ ପାଇବାର ଶେଷ ଅଭିବ୍ୟକ୍ତି ।

ସେ ମୋତେ ବସ୍ତୁଗତ ସୁଖ ସୁବିଧା ଦେଇ ନାହାନ୍ତି ସତ, ମାତ୍ର ମୋର ଭର୍ତ୍ସନା (ତମ ପାଇଁ ମୋର ଗୋଟିଏ ଜନ୍ମ ବ୍ୟର୍ଥ ହେଲା)କୁ ନିରବରେ ସହିଛନ୍ତି, ମୋତେ ସାମାଜିକ ସମ୍ମାନ, ସ୍ୱୀକୃତି ଦେଇଛନ୍ତି, ସନ୍ତାନର ଅଭାବ ପୂରଣ କରିଛନ୍ତି । ସର୍ବୋପରି ଜୀବନର ଶ୍ରେୟ ମାର୍ଗରେ ଚାଲିବା ପାଇଁ ଆଧ୍ୟାତ୍ମିକ 'ମାର୍ଗ ଦର୍ଶକ'ଙ୍କର ସନ୍ଧାନ ଦେଇଛନ୍ତି । ତେଣୁ ତାଙ୍କ ସହ ଜୀବନଯାତ୍ରା ଯେତେ ଦୁର୍ବିସହ ହେଲେ ମଧ୍ୟ ତାଙ୍କ ସ୍ମୃତି ଅବିସ୍ମରଣୀୟ ।



# ଅନ୍ତର୍ଯ୍ୟାମୀ ସ୍ୱାଇଁ

ଅନ୍ତର୍ଯ୍ୟାମୀ, ମୋ ଜୀବନ ଇତିହାସର ଏକ ଅବିଚ୍ଛେଦ୍ୟ ଅଧ୍ୟାୟ। ଅଷ୍ଟମରୁ ଏକାଦଶ ଶ୍ରେଣୀ ପର୍ଯ୍ୟନ୍ତ ଗୋଟିଏ ସ୍କୁଲରେ ସାଙ୍ଗ ହୋଇ ପାଠ ପଢ଼ିଥିଲୁ। ତା'ପରେ ୧୯୭୫ ମସିହାରୁ ସେ ଅନ୍ୟ ଏକ ସମ୍ପର୍କରେ ସମ୍ପର୍କିତ। ମୋତେ ଖୁଡ଼ୀ ବୋଲି ଡାକେ, ମୁଁ ବି ତାକୁ କେବେ କେମିତି ତୁମେ ବଦଳରେ ତୁ ବୋଲି କହି ଆସୁଛି ସେ କଥା ମନେ ପକାଇ ପାରୁ ନାହିଁ। ସମ୍ପର୍କ ସିନା ଭିନ୍ନ କିନ୍ତୁ ମନେହୁଏ ମୋ ଜୀବନ ଯେମିତି ତା ସହିତ କେଉଁ ଏକ ଅଦୃଶ୍ୟ ଶିକୁଳିରେ ବନ୍ଧା ହୋଇଛି। ୧୯୭୬ ମସିହାଠାରୁ ଏ ଯାବତ୍ କୌଣସି ସମସ୍ୟା (ପାରିବାରିକ ହେଉ କିମ୍ବା ସାମାଜିକ) ତାର ବିନା ପରାମର୍ଶରେ ସମାଧାନ କରିବାକୁ ମୁଁ କ୍ଷମ ହୋଇନାହିଁ। ଏପରିକି ଘରକୁ କେହି କୁଣିଆ ଆସିଲେ କେମିତି ସତ୍କାର କରାଯିବ, ବନ୍ଧୁବାନ୍ଧବଙ୍କ ଘରକୁ କ'ଣ ବେଭାର ଦିଆଯିବ ଇତ୍ୟାଦି ପାଇଁ ମୁଁ ତା'ର ପରାମର୍ଶ ଲୋଡ଼ିଥାଏ। ମୋର ସାଙ୍ଗସାଥୀ, ମୋ ପୁଅଝିଅଙ୍କର ସାଙ୍ଗସାଥୀ ସମସ୍ତଙ୍କ ପାଖରେ ସେ ପରିଚିତ। ମୋ ଜୀବନର ସୁଖ, ଦୁଃଖ, ଭୋଗ, ବେଦନା ସବୁ ମୁଁ ତା ଆଗରେ ନିଃସଙ୍କୋଚରେ ପ୍ରକାଶ କରି ଦେଇଥାଏ। ସବୁବେଳେ ସେ ମୋ ସାଙ୍ଗରେ ଅଛି। ଭୁବନେଶ୍ୱରରେ ରହି ମୋ ପାଖକୁ ନ ଆସିଲେ ମଧ୍ୟ ତାର ଉପସ୍ଥିତି ମୁଁ ଅନୁଭବ କରିଥାଏ। ସେ ଭୁବନେଶ୍ୱର ଛାଡ଼ି କୌଣସି ଦୂର ଜାଗାକୁ ଗଲେ ମୋତେ ଅସହାୟ ବୋଧ ହୋଇଥାଏ। ମୋ ଜୀବନ ପାଇଁ ତାର ତ୍ୟାଗ ଅସୀମ। ତାକୁ ମାପିବା ମୋ ଶକ୍ତିର ବାହାରେ। ପ୍ରତିଦାନରେ ମୁଁ କେବଳ ପ୍ରାର୍ଥନା କରିବି ତା'ର ଜୀବନ ଆନନ୍ଦରେ କଟିଯାଉ।



# ଶରତ ଭାଇ

ସାମାଜିକ ସମ୍ପର୍କରେ ସେ ମୋର ଦେଢ଼ଶୂର। ବ୍ୟକ୍ତିଗତ ଭାବେ ତାଙ୍କ ସହିତ ମୋର ସମ୍ପର୍କ ଅତ୍ୟନ୍ତ ଆବେଗିକ ଓ ଅନ୍ତରଙ୍ଗ। ମୁଁ ଯାହାଙ୍କ ସହିତ (ବୈକୁଣ୍ଠ ବିଶ୍ୱାଳ) ଆଜୀବନ ବଞ୍ଚିବାର ନିଷ୍ପତ୍ତି ନେଇଥିଲି, ସେଠୁ ଏମିତି କିଛି ମଧୁର ସ୍ମୃତି ଜୀବନରେ ଧରି ରଖିବାକୁ ମୋତେ ମିଳି ନାହିଁ, ଅଥଚ ଭାଇ (ଶରତ ଭାଇ) ଥିଲେ ମୋ ପାଇଁ ଏକ ସ୍ମୃତି ମାଲ୍ୟ।

ଗୋଟିଏ ସ୍କୁଲରେ ପାଠ ପଢ଼ିଲାବେଳେ ଅଷ୍ଟମ ଶ୍ରେଣୀରୁ ମୁଁ ତାଙ୍କୁ ଜାଣିଛି। ସେତେବେଳେ ଜାଣିଥିଲି ଉଚ୍ଚ ଶ୍ରେଣୀରେ ପଢୁଥିବା ବଡ଼ଭାଇ ହିସାବରେ। କୈଳାଶ ଚନ୍ଦ୍ର ଟିକାୟତ ରାୟ, ବ୍ରହ୍ମାନନ୍ଦ ଭାଇ, ଦାମ ଭାଇ(ଦାମୋଦର ବିଶ୍ୱାଳ) ପ୍ରଭୃତି ସମସ୍ତେ ତାଙ୍କ ସହପାଠୀ। ସେତେବେଳେ ସ୍କୁଲରେ ପ୍ରେୟାର ବେଲ୍ ବାଜିଲେ ଆମ ଗାର୍ଲସ୍ କମନ୍‌ରୁମ୍ ଦରଜା ପାଖରେ ବ୍ରହ୍ମାନନ୍ଦ ଭାଇ କିମ୍ବା ଶରତ ଭାଇ ଆସି ଆମକୁ ପ୍ରେୟାର ପାଇଁ ଡାକିଥାନ୍ତି। ସ୍କୁଲରେ ତାଙ୍କ ସହିତ ଥିଲା ଏତିକି ସମ୍ପର୍କ। ତାଛଡ଼ା ତାଙ୍କ ସାନଭାଇ ପ୍ରଫୁଲ୍ଲ ଓ ମୋ ସାନ ଭଉଣୀ ସୁଷମା ଏକା କ୍ଲାସରେ ପଢୁଥାନ୍ତି। ସେ ଦୃଷ୍ଟିରୁ ତାଙ୍କ ବିଷୟରେ କିଛି ଆଲୋଚନା ପରୋକ୍ଷ ଭାବରେ ହୋଇଥାଏ। ସମ୍ପର୍କ କେବେ ଗାଢ଼ ହେଲା, ତା ମୁଁ ମନେପକାଇ ପାରୁ ନାହିଁ। ମାତ୍ର ମୋ ପାଖକୁ ତାଙ୍କର ପ୍ରଥମ ଚିଠି ସ୍ପଷ୍ଟ ମନେ ଅଛି, ଯେଉଁଥିରେ ସେ ତାଙ୍କର ସାନଭାଇ (ବୈକୁଣ୍ଠ ବିଶ୍ୱାଳଙ୍କ) ଜୀବନର ସହଯାତ୍ରୀ ହେବା ପାଇଁ ମୋତେ ପରୋକ୍ଷ ନିର୍ଦ୍ଦେଶ ଦେଇଥିଲେ। ସେ ହିଁ ଥିଲେ ମୋ ସାଂସାରିକ ଜୀବନର ପ୍ରଥମ ପ୍ରେରଣା। ତାଙ୍କ ସହିତ ମୋର ସମ୍ପର୍କ କ୍ରମେ ଘନିଷ୍ଠ ହେଲା। ତାଙ୍କର କେତେଜଣ ସମ୍ପର୍କୀୟ (ଦଇତାରୀ ଭାଇ, ପ୍ରତିଭା ଦିଦି, ବିଷ୍ଣୁ ମାମୁଁ) ଇତ୍ୟାଦିଙ୍କୁ ମୁଁ ଦେଖି ନଥିଲେ ମଧ୍ୟ

ସେମାନେ ମୋତେ ପରିଚିତ ଓ ନିଜର ବୋଲି ବୋଧ ହେଲେ। ଭାଇ ଥିଲେ ସେ ସମ୍ପର୍କର ସେତୁ। ତାଙ୍କ ସହିତ ଘଟି ଥିବା ଘଟଣାଗୁଡ଼ିକ ଏମିତି ଜୀବନ୍ତ ରୂପ ନେଇଛନ୍ତି ଯେ ବିନିଦ୍ର ହୋଇ ଚଳଚ୍ଚିତ୍ର ଦେଖିଲା ଭଳି ସେଗୁଡ଼ିକୁ ମୁଁ ଦେଖୁଛି। କେତେବେଳେ ତାଙ୍କର ସୌମ୍ୟ ରୂପ ଆଖି ଆଗରେ ଛିଡ଼ା ହେଉଛି ତ ଆଉ କେତେବେଳେ ତାଙ୍କର ସ୍ନେହ ଅଭିବ୍ୟକ୍ତି କାନରେ ଅନୁରଣିତ ହେଉଛି। ଏକାଦଶାହ ଉପଲକ୍ଷେ ଗାୟତ୍ରୀ ବିହାରରେ ଥିବା ତାଙ୍କର ବାସଭବନରେ ଉପସ୍ଥିତ ଥିଲି। ସେଠି ତାଙ୍କର ଯେଉଁ ଫଟୋ ଦେଖିଲି କେଜାଣି କାହିଁକି ଅନ୍ତର ଭିତରେ ଏକ ଅକୁହା ବେଦନା ଅନୁଭବ କଲି। ଅପାଙ୍କୁ ପଚାରି ବୁଝିଲି ଫଟୋଟି ଥିଲା ଦୁଇଭାଇ (ଶରତ ବିଶ୍ୱାଳ ଓ ବୈକୁଣ୍ଠ ବିଶ୍ୱାଳ)ଙ୍କର ଏକ ମିଳିତ ଫଟୋ ଯେଉଁଥିରୁ ଭାଇଙ୍କ ଫଟୋକୁ ଅଲଗା କରାଯାଇ ବଡ଼ କରା ହୋଇଛି। ବ୍ରାହ୍ମଣ ଦ୍ୱାରା କରାଯାଉଥିବା ବିଧି ବିଧାନକୁ ମୁଁ ମୋଟେ ସହିପାରୁ ନଥିଲି। ସ୍ଥୂଳ ଭାବରେ ସେଠି ବସି ରହିଥିଲେ ମଧ୍ୟ ମୁଁ ଘୂରି ବୁଲୁଥିଲି ସୁଦୂର ଅତୀତର ସେହି ଜାଗାମାନଙ୍କରେ ଯେଉଁଠି ତାଙ୍କ ସହିତ ମୋର ସମସ୍ତ ମଧୁର ସ୍ମୃତି ଜଡ଼ିତ। କେତେବେଳେ ଭୁବନେଶ୍ୱର ଶହିଦ୍‌ନଗରର ୭୨୮ ନମ୍ବର ଘର ତ କେତେବେଳେ ରାଉରକେଲାରେ ଥିବା ତାଙ୍କ କ୍ୱାଟର, ଆଉ କେତେବେଳେ ମୋର ଅତୀତର କର୍ମକ୍ଷେତ୍ର ବନ୍ଧବାହାଲ ଗ୍ରାମ। ରାତି ପାହାନ୍ତି ପହର ହେଲାଣି। ମୋ ଆଖିରେ ନିଦର ସୂଚନା ମଧ୍ୟ ନାହିଁ। ମୋତେ ଲାଗୁଛି ଭାଇ ଯେମିତି ଏଠି ଉପସ୍ଥିତ ଅଛନ୍ତି। ଯଦି ଆତ୍ମାର ସୂକ୍ଷ୍ମ ଶରୀରରେ ଅବସ୍ଥାନ ସତ୍ୟ ହୋଇଥାଏ ତାହେଲେ ଆଜି ତାଙ୍କୁ ପ୍ରାର୍ଥନା ଜଣାଉଛି ଯେ ତାଙ୍କ ସହିତ ବିତିଥିବା କେତେକ ମଧୁର ସ୍ମୃତି ଚାରଣ ହିଁ ତାଙ୍କ ପ୍ରତି ମୋର ଭକ୍ତି ଶ୍ରଦ୍ଧାଞ୍ଜଳି ହେଉ।

ଗାୟତ୍ରୀ ବିହାରରୁ ଫେରିବା ବାଟରେ ବନ୍ଧୁ ଦୀନେଶ ଭଟ୍ଟାଚାର୍ଯ୍ୟ, ତାଙ୍କ ସହଧର୍ମିଣୀ ସ୍ୱର୍ଣ୍ଣ, ଅନ୍ତର୍ଯ୍ୟାମୀ ଓ ମୁଁ ବନ୍ଧୁ ପ୍ରଦୀପ ମହାନ୍ତିଙ୍କ ଘରକୁ ଗଲୁ। ପ୍ରଦୀପ ଘରେ ଦୀନେଶ ରାଉରକେଲାରେ ଭାଇଙ୍କ ସହିତ ଥିବା ତାଙ୍କ ସମ୍ପର୍କ ଏବଂ ତାଙ୍କ ସହ ଘଟିଥିବା କେତେକ ଘଟଣାର ବର୍ଣ୍ଣନା ଦେଲେ। ଭାଇ ରାଉରକେଲାରେ ଥିଲାବେଳେ ଦୀନେଶ ମଧ୍ୟ ସେଠାରେ ଲେବର ଅଫିସର୍ ଥିଲେ। ଦୀନେଶ ଭାଇଙ୍କ ବିଷୟ ଆଲୋଚନା କରୁଥିବା ବେଳେ

ଲାଗୁଥାଏ ଯେମିତି ଘଟଣାଗୁଡ଼ିକ ଆଖି ଆଗରେ ଘଟି ଯାଉଛି। ଅବଶ୍ୟ ବର୍ଣ୍ଣନା ଚାତୁରୀରେ ଦୀନେଶ ଖୁବ୍ ଧୁରନ୍ଧର।

କଥାବାର୍ତ୍ତା ଭିତରେ ବିଭୁତି ଆଚାର୍ଯ୍ୟଙ୍କ କଥା ଦୀନେଶ କହିଲେ। ବିଭୁତି ସହିତ ଭାଇଙ୍କର ସମ୍ପର୍କ ମଧ୍ୟ ନିବିଡ଼। ବିଭୁତି ସମ୍ପର୍କରେ ଭାଇଙ୍କର ଏକ ଅଭିବ୍ୟକ୍ତି ମନେପଡ଼ିଲା। ରାଉରକେଲାରେ ଭାଇଙ୍କ ପାଖରେ ବିଭୁତି ତା ସାନଭାଇ ସତ୍ୟକୁ ନେଇ ଛାଡ଼ିଥାଏ। ବୋଧହୁଏ ସତ୍ୟ ଚାକିରି ଅନ୍ୱେଷଣରେ ଥାଏ। କୌଣସି କାରଣରୁ ମୁଁ ମଧ୍ୟ ରାଉରକେଲା ଯାଇ ଭାଇଙ୍କ କ୍ୱାର୍ଟରରେ ଥିଲି। ଭାଇ ଜାଣିଥାନ୍ତି ବିଭୁତି ସହିତ ମୋର ସମ୍ପର୍କ, ଭାଇ ଭଉଣୀର ସମ୍ପର୍କ। ତେଣୁ ଦିନେ ମୋତେ କହିଲେ "ବିଭୁତି ଗୋଟାଏ ଟୋକାକୁ ଆଣି ମୋତେ ଦେଇଛି ଯେ ରାତି ପାହିଲେ ନିତି ସେ ମୋତେ ଛୁରୀ ଦେଖାଉଛି।"

ମୁଁ ଜାଣିଲି ଏହାଥିଲା ତାଙ୍କର ବ୍ୟାଜସ୍ତୁତି (ନିନ୍ଦାଛଳେ ସ୍ତୁତି)। ସତ୍ୟ ଏ କଥା ଶୁଣି ହସୁଥାଏ। ଭାଇଙ୍କର ପରିହାସ ଯେ କେତେ ହାସ୍ୟବ୍ୟଞ୍ଜକ ସେଦିନ ସେଠି ଉପସ୍ଥିତ ଥିବା ବନ୍ଧୁମାନେ ଅନୁଭବ କରିଥିଲେ। ମୋତେ ସେ ବହୁତ ଭଲ ପାଉଥିଲେ। ତେଣୁ ମୋ ଭାଇମାନଙ୍କୁ ଥଟ୍ଟା କରିବାକୁ ତାଙ୍କୁ ଭଲ ଲାଗୁଥିଲା। ଗୋଟିଏ ଗୁଳିରେ ଦୁଇଟି ଚଢ଼େଇ ସେ ଶିକାର କରୁଥିଲେ। ମୋର ସହୋଦର କେହି ନାହାନ୍ତି। ମାତ୍ର ଜୀବନର ଯାତ୍ରା ପଥରେ ଏମିତି କେତେଜଣ ମିଳିଛନ୍ତି ଯେଉଁମାନଙ୍କ ଅନାବିଳ ସ୍ନେହ ସହାନୁଭୂତି ଯୋଗୁଁ ମୋର ସେ ଅଭାବ ଦୂର ହୋଇଛି। ସେମାନଙ୍କ ମଧ୍ୟରେ ଶ୍ରୀ ସୁରେଶ ଚନ୍ଦ୍ର ନାୟକ, ଯାଜପୁର, ବିଭୁତି ଆଚାର୍ଯ୍ୟ, ଯାଜପୁର, ସନ୍ତୋଷ ଦାସ, ଯାଜପୁର, ଭାଇଙ୍କର ପ୍ରକୃତ ଶଳା ଶ୍ରୀ ବିଶ୍ୱ ପ୍ରକାଶ ମହାପାତ୍ର, ଯାଜପୁର। ରସୁଲଗଡ଼ ଇଣ୍ଡଷ୍ଟ୍ରିଆଲ ଇଷ୍ଟେଟ୍‌ରେ ଥରେ ମୁଁ ପିଲାମାନଙ୍କୁ ଧରି ରହିଥାଏ। ଭାଇ ଆସି ପହଞ୍ଚିଲେ। ଭାଇ ଆସିଲେ କେହିନା କେହି ବନ୍ଧୁ ୫/୭ ଜଣ ଆସି ଜୁଟିଯାନ୍ତି। ବିଭିନ୍ନ କଥା ଆଲୋଚନା ହୁଏ। ଭାଇ ଥରେ ମୋତେ ଶୁଣାଇ ଶୁଣାଇ ତାଙ୍କର ବନ୍ଧୁମାନଙ୍କୁ କହିଲେ, "ଶଳା ଏ ଯାଜପୁରିଆ ମାନଙ୍କୁ ମୋଟେ ବିଶ୍ୱାସ କରିବ ନାହିଁ। ପକେଟ୍‌ରେ ଟାଉନ୍ ବସ୍ ଭଡ଼ା ଧରି ବୁଲୁଥିବେ।" ମୁଁ ଦେଖିଲି ବନ୍ଧୁମାନେ ବେଶ୍ ଉପଭୋଗ କରୁଥାନ୍ତି ତାଙ୍କର ଏ ଅଭିବ୍ୟକ୍ତିକୁ। କେହି କେହି ଆଉ ପଦେ ଦିପଦ ବି

ଯାଜପୁରିଆଙ୍କ ବିଷୟରେ କହୁଥାନ୍ତି। ଆସର ଭଲ ଜମିଥିଲା ସେଦିନ ମୁକ୍ତ ଆକାଶ ତଳେ।

ସମ୍ପର୍କରେ ସେ ମୋର ଦେଢ଼ଶୂର ହେଲେ ମଧ୍ୟ ମୋତେ ସେ ସାନ ଭଉଣୀର ସ୍ନେହ ଦେଉଥିଲେ। ଥରେ ରାଉରକେଲାରେ ତାଙ୍କର କ୍ୱାର୍ଟରରେ ମୁଁ ଥାଏ। ରବିଦାଦା (ବିପ୍ଳବୀ ରବି ଦାଶ)ଙ୍କ ସାନ ଭାଇ ଗୋବିନ୍ଦ ଦାଦା ଭାଇଙ୍କ ପାଖକୁ ଆସିଥାନ୍ତି। ମୁଁ ଦୁଇ କପ୍ ଚା ଆଣି ଦୁଇ ଜଣଙ୍କ ଆଗରେ ରଖିଲି। ଗୋବିନ୍ଦ ଦାଦା ଗଲା ପରେ ଭାଇ ମୋତେ କହିଲେ "ତୁ ଆମ ଗାଁ ଝିଅ, ମୋର ସାନ ଭଉଣୀ ଭଳି। ଏତେ ସଙ୍କୋଚ କାହିଁକି କରୁଛୁ? ଲୋକ ଥିଲା ବେଳେ ଚା ତଳେ ରଖିବୁ। କେହି ନଥିଲେ ମୋତେ ଧରେଇ ଦେବୁ।" ମୋ ପିଲାମାନଙ୍କୁ ସେ ଏତେ ସ୍ନେହ ଶ୍ରଦ୍ଧା ଦେଇଛନ୍ତି ଯେ ତାର ତୁଳନା ନାହିଁ। ରାଉରକେଲାରେ ତାଙ୍କରି କ୍ୱାର୍ଟରରେ ପିଲା ଦି'ଟାଙ୍କୁ ଛାଡ଼ି ମୁଁ ମାଟ୍ରିକ ବୋର୍ଡ଼ ପରୀକ୍ଷାର ଖାତା ଦେଖିବାକୁ ଯାଇଥିଲି। ସେତେବେଳେ ତାଙ୍କ କ୍ୱାର୍ଟରରେ ଜଣେ ପୁତୁରା ବୋହୂ ରହୁଥିଲା। ଭାଇ ସକାଳୁ ବୋହୂକୁ କହି ଦେଉଥିଲେ "ପିଲାମାନେ ମୋ ସାଙ୍ଗରେ ଖାଉଛନ୍ତି, ଟିକେ ଭଲ ରକମ ରୋଷେଇ କରିଥିବ।" ପିଲାମାନଙ୍କର ପ୍ୟାଣ୍ଟ, ସାର୍ଟ ସଫା କରି ଦେଉଥିଲେ, ନଖ କାଟି ଦେଉଥିଲେ, ତାଙ୍କ ପାଖରେ ପିଲାଙ୍କୁ ଛାଡ଼ି ମୁଁ ନିଃଶଙ୍କରେ ୧୦/୧୨ ଦିନ କଟାଇ ଦେଇଥିଲି ଖାତା ଦେଖାରେ।

ମୋ ସ୍କୁଲକୁ ମଧ୍ୟ କେତେଥର ମୋତେ ଛାଡ଼ିବା ପାଇଁ ଯାଇଛନ୍ତି। ସେତେବେଳେ ସେ ସ୍କୁଲରେ ପହଞ୍ଚିବା ପାଇଁ ସୁନ୍ଦରଗଡ଼ରୁ ଯଶପୁର ବସ୍‌ରେ ଯାଇ ତେଲିଯୋର ଠାରେ ଓହ୍ଲାଇ ୩/୪ କି.ମି. ପାଦରେ ଚାଲି ଚାଲି ଯିବାକୁ ପଡୁଥିଲା। ଭାଇ ପିଲା ଦି'ଟାଙ୍କୁ ଜଣକୁ କାନ୍ଧରେ ବସାଇ ଜଣଙ୍କୁ କାଖରେ ଧରି କବି ମନମୋହନ ମିଶ୍ରଙ୍କ କବିତା ଆବୃତ୍ତି କରି କରି ଚାଲିଥାନ୍ତି। ମୁଁ ପଛରେ କବିତା ଶୁଣି ଶୁଣି ପଥଶ୍ରମ ଲାଘବ କରୁଥାଏ। ଏମିତି କେତେ କଥା, କେତେ ସ୍ମୃତି କାହାକୁ ମୁଁ ଭୁଲିବି? କେମିତି ଭୁଲିବି? ମୋ ଝିଅ ଚେତନା ଜନ୍ମ ସମୟର କଥା। ମୁଁ ଛୁଟିରେ ଥାଏ। ଶହୀଦ ନଗର ୭୨୮ ନମ୍ବର ଭଡ଼ା ଘରେ ରହୁଥିଲୁ। ଝିଅଟି ଏତେ ଦୁର୍ବଳ ଥାଏ ଯେ ସେ ବଞ୍ଚି ରହି ଦିନେ ମୋର ବାର୍ଦ୍ଧକ୍ୟରେ ସାହାରା ହେବ, ଏକଥା ମୁଁ ସ୍ୱପ୍ନରେ ବି ଭାବି ନଥିଲି। ସୂର୍ଯ୍ୟ ଉଦୟ ହେଲେ ସେ ଆଖି ବୁଜିଦିଏ

ପୁଣି ସୂର୍ଯ୍ୟାସ୍ତ ପରେ ଆଲୁଅ ଜଳିଲେ ସେ ଆଖି ଖୋଲେ । ଦିନବେଳେ ତାର ଜୀବନୀ ଶକ୍ତି ଉପରେ ମୋର ସନ୍ଦେହ ଥାଏ । ତେଣୁ ତାକୁ ଏକୁଟିଆ ଘରେ ନ ଛାଡ଼ି କୋଳରେ ଧରି ମୁଁ ରୋଷେଇ ଘରେ ଚୁଲିରେ ରୋଷେଇ କରେ । ବେଳେବେଳେ ଭାଇ ଆସି ପହଞ୍ଚିଯାନ୍ତି । ଅଗଣାରେ ଅଳିଆ ଥିଲେ ସଫା କରି ଦିଅନ୍ତି । ଝିଅକୁ ଘରେ ଜଗି କରି ବସିଲେ ମୁଁ ରୋଷେଇ କରେ । ବେଳେବେଳେ ଝିଅର ଝାଡ଼ା, ପରିସ୍ରା କପଡ଼ା ମଧ୍ୟ ସଫା କରିଦେବେ ବୋଲି କହି ମୋତେ ମାଗିଥାନ୍ତି । ଏହିସବୁ କଥା ଆଜି ଛାତି ଭିତରେ ଏମିତି ପଥର ପରି ଜମାଟ ବାନ୍ଧିଛି ଯେ ଛାତିଟା ଫାଟିଗଲା ଭଳି ଲାଗୁଛି ।

ତାଙ୍କ ଗାଁ, ତାଙ୍କ ବଂଶ, ତାଙ୍କ ପରିବାର, ଗାଁର ଭଲ ମନ୍ଦ ବିଷୟରେ ମୁଁ ଯେତିକି ଜାଣିଛି ସବୁ ଭାଇଙ୍କ ଠାରୁ । ସ୍ତ୍ରୀ ଲୋକମାନଙ୍କ ଆଗରେ ଏ ସବୁ କଥା କାହିଁକି କହୁଛନ୍ତି ବୋଲି ତାଙ୍କ ଭାଇ (ବୈକୁଣ୍ଠ ବିଶ୍ୱାଳ) ଆକଟ କଲେ, ଭାଇଙ୍କର ଉତ୍ତର "ଆରେ ତୁ କ'ଣ ଜାଣିଛୁ, ତୁ ତ ତାକୁ କିଛି କହିବୁ ନାହିଁ । ସେ କେମିତି ଚଳିବ, ତାକୁ କିଏ ଶିଖାଇବ ।" ଏମିତି ଅନେକ କଥା । ଏତେ ଅନ୍ତରଙ୍ଗ ଆବେଗ ମୁଁ କେମିତି ଭୁଲିବି ?

କ୍ରମେ ସମୟ ଅସହଯୋଗ କଲା, ଜୀବନ ଭିନ୍ନ ମୋଡ଼ ନେଲା । ଭାଇଙ୍କର କର୍ମକ୍ଷେତ୍ର ବଦଳିଲା, ଯୋଗାଯୋଗ ବିଚ୍ଛିନ୍ନ ହେଲା । ଭୁବନେଶ୍ୱରରେ କେମିତି କେତେବେଳେ କାଁ ଭାଁ, ଦେଖା ହେଲା । ଭାଇ ଭାଇ ଭିତରେ ପାଚେରୀ ଛିଡ଼ା ହେଲା । ଦିନେ ଭାଇ ଆସି ମୋତେ କହିଲେ, "ଭାଇକି ନେଇ କାଠଗଡ଼ାରେ ଛିଡ଼ା କଲା, ଭାଇର ଇଜ୍ଜତ ବରବାଦ କଲା" ଇତ୍ୟାଦି । ତାଙ୍କ କଥାରୁ ମୁଁ କେବଳ ଏତିକି ବୁଝିଲି ଯେ ଭାଇ ଭାଇ ଭିତରେ ଲଢ଼େଇ ଚାଲିଛି । କାରଣ ଓ ଫଳାଫଳ ମୋତେ ଏପର୍ଯ୍ୟନ୍ତ ଅଜଣା ।

ଦିନେ ମୋ ଜୀବନରେ ଅକାଳ ଝଡ଼ ଆସିଲା । ଏକୁଟିଆ ହୋଇଗଲି । ଭାଇଙ୍କ ସାହାରା ପାଇଲି ନାହିଁ । କେତେବେଳେ ରବିଦାଦା, କେତେବେଳେ ଆଉ କେହି ପରିଚିତ ବ୍ୟକ୍ତି ଦେଖାହେଲେ ଖବର ନିଏ, ଭାଇ ତାଙ୍କ ଆଦର୍ଶ ପ୍ରଚାରରେ ଲାଗିଛନ୍ତି । ଦିନେ ଅଚାନକ ଦେଖିଲି ଚେତନା ସାଙ୍ଗରେ ରବିଦାଦା ଆମ ଘରକୁ ଆସିଛନ୍ତି । ଗେଟ୍ ପାଖରେ ଗାଡ଼ି ଛିଡ଼ା ହୋଇଛି ।

ଝିଅ କହିଲା, "ବୋଉ, ବଡ଼ବାପା ଗାଡ଼ି ଭିତରେ ବସିଛନ୍ତି।" ଗାଡ଼ି ପାଖକୁ ଦୌଡ଼ିଗଲି। ଦେଖିଲି ଭାଇ ବସିଛନ୍ତି। ଭଗ୍ନ ସ୍ୱାସ୍ଥ୍ୟ, ସେ ସୌମ୍ୟକାନ୍ତ ଚେହେରା ଆଉ ନାହିଁ। ମନ ଖରାପ ହେଲା, ପ୍ରଣାମ କଲି। ଭାଇ କିଛି କହିଲେ ନାହିଁ। ଫେରି ଆସିଲି। ସେଇଥିଲା ତାଙ୍କ ସହିତ ମୋର ଶେଷ ନିରବ ଦର୍ଶନ।

ମୋ ଝିଅ ଚେତନା ତା ବାପା ବିଷୟରେ ଲେଖାଟିଏ ମୋତେ ମାଗିଥିଲା। ମୁଁ କିଛି ଲେଖି ପାରି ନଥିଲି। କେବଳ ଦୁଇଟି ଧାଡ଼ି ଲେଖିଥିଲି। ସେ ହେଲା-

"ସ୍ମୃତିତ କଦାପି ନୁହେଁ ଭୁଲିବାର
ଭୁଲି ପାରିଲେ ମୁଁ ପାଆନ୍ତି ନିସ୍ତାର।"

ଆଜି ସେଇ କଥାକୁ ପୁଣି ଥରେ ଦୋହରାଉଛି। ଭାଇଙ୍କ ଅମର ଆତ୍ମାଙ୍କୁ ମୋର ସଶ୍ରଦ୍ଧ ପ୍ରଣାମ।

(ଭାଇଙ୍କର ଏକାଦଶାହ ଉପଲକ୍ଷେ ଲିଖିତ)



# ଶେଷକଥା

ମୁଁ କବି ନୁହେଁ କି ଲେଖିକା ନୁହେଁ, ଲେଖକୀୟ ମାନ୍ୟତା ପାଇବା ମଧ୍ୟ ମୋର ଉଦ୍ଦେଶ୍ୟ ନୁହେଁ। ଚାକିରିରୁ ଅବସର ଗ୍ରହଣ ପରେ ନିଃସଙ୍ଗ ଜୀବନରେ ସମୟ ଅତିବାହିତ କରିବା ପାଇଁ ବନ୍ଧୁ ଦୁଇଜଣଙ୍କର ସୁ ପରାମର୍ଶ ହିଁ ମୋ ଲେଖା ପାଇଁ ପ୍ରେରଣା। ଆଗକୁ ଆଗେଇବା ହେଉଛି ସମୟର ଧର୍ମ। ପ୍ରଭାତ, ଦିବସ, ସଞ୍ଜ, ରାତି ସବୁକୁ ଅତିକ୍ରମ କରି ଆଗକୁ ବଢୁଥାଏ ସମୟ। ପଛରେ ଛାଡ଼ିଯାଏ କିଛି ଅଭୁଲାସ୍ମୃତି ଓ କିଛି ଅଙ୍ଗେ ଲିଭା ଅନୁଭୂତି। ଅବୁଝା ମଣିଷ ସେଇ ହଜି ଯାଇଥିବା ସମୟ ପାଇଁ ବେଳେ ବେଳେ ବିଳାପ କରେ ଓ ସ୍ମୃତି ସାଉଁଟେ। ମୁଁ କେବଳ ତାହାହିଁ କରିଛି। ହଜି ଯାଇଥିବା ସମୟର କିଛି ସ୍ମୃତିକୁ ଗୋଟାଇବା ସାଙ୍ଗେ ସାଙ୍ଗେ ଅନ୍ତରରେ ଆଲୋଡ଼ନ ସୃଷ୍ଟି କରିଥିବା ଆବେଗକୁ କେତେଗୁଡ଼ିଏ କବିତା ମାଧ୍ୟମରେ ରୂପ ଦେଇଛି ମାତ୍ର। ଯଦି କୌଣସି ବିଦଗ୍ଧ ପାଠକଙ୍କ ମନରେ ସେଗୁଡ଼ିକୁ ପଢ଼ିବା ପାଇଁ ଆଗ୍ରହ ସୃଷ୍ଟି ହୁଏ, ତାହେଲେ ମୋର ଶ୍ରମ ସାର୍ଥକ ହୋଇଛି ବୋଲି ମନେ କରିବି।



# ସ୍ମୃତିତୀର୍ଥ ଚଣ୍ଡିଆଗଡ଼ି

(୧)

ଚଣ୍ଡିଆଗଡ଼ି, ଚଣ୍ଡିଆଗଡ଼ି
ଅତୀତ ଜୀବନ ସାଇତାପେଡ଼ି
ପଶ୍ଚିମ ଜୀବନେ ଚେଇଁ ଉଠେ ଆଜି
          ଆକର୍ଷଣ ତାର ନପାରେ ଏଡ଼ି............ (୧)

ବଉଳ ତଳେ ତା ଚୋଟାମାଳେ
କଣ୍ଢେଇକୋଳି ତୋଳିଲାବେଳେ
ଚପଳ କୈଶୋର ଯାଇଛି ହଜି
          ତା'ରି ନଈ ଆହାର କୂଳେ.............. (୨)

ମଙ୍ଗଳାମାଳେ ବୁଢ଼ୀମଙ୍ଗଳା
ମାଜଣା ପାଇଁ ହୁଅନ୍ତି ମେଳା
ପିଲାଠୁଁ ବୁଢ଼ୀ ସବୁରି କଣ୍ଠୁ
          ଝରଇ ମା'ର ମହିମା ଲୀଳା.............. (୩)

ମଙ୍ଗଳା ମାଳ ଯିବାର ବେଳେ
ଗାଁ ଶମଶାନ ବାଟରେ ପଡ଼େ
ନିଭୃତ ଅନ୍ତର ଅକୁହା ବେଦନା
          ଲୁହ ହୋଇ କେବେ ଆଖିରୁ ଝରେ....... (୪)

ସଡ଼କଧାରେ ବିଦ୍ୟାମନ୍ଦିର
ଫକୀର ରଣା ହେଡ଼ମାଷ୍ଟର
ସାଥୀମେଳେ କଟେ ଦିବସ ରଜନୀ
          ମଧୁର ସ୍ମୃତିର ସେ ଗନ୍ତାଘର.............. (୫)

ଅତି ମନୋରମ ପ୍ରକୃତି କୋଳେ
ଆମ୍ବତୋଟା କାଜୁ ବଗିଚା ମେଳେ
ବିଜେ କରିଛନ୍ତି 'ବନା' ମହାଦେବ
ମାଟିକାନ୍ଥ ନଡ଼ା ଛପର ତଳେ............. (୬)

ପୂଜାରୀ ଲେଙ୍ଗଡ଼ କର ଗୋସାଇଁ
କାଜୁ ବଗିଚାର ମାଲିକ ସେହି
ଶିଶୁମେଳ ଦେଖି କାଜୁ ଗଛ ତଳେ
ଚମକାଇଥାନ୍ତି କୁହାଟ ଦେଇ............. (୭)

ଭାତୁଆ ମଠର ନାରଣ କର
ଗାଁ ହିସାବରେ ଅଜା ସେ ମୋର
ବଟ ଗୋସାଇଁଙ୍କ ସେବା ସେ କରନ୍ତି
ସାଇକୁ ଆସିଲେ ମୋ ପ୍ରାଣେ ଡର........ (୮)

ଆବେଗେ କହନ୍ତି "କାଳି"କୁ ଡାକ
ସେ ମୋ ଗଳାମାଳି ଜୀବନଯାକ
ଚପଳ ବୟସେ ବୁଝି ନପାରେ ମୁଁ
ପରିହାସ ତାଙ୍କ ମୁଁ ପିଲାଲୋକ............ (୯)

ମାମୁଁଘର ଖାଲି ନାଁଟା ସାର
ଗୋଟିଏ ବଖରା ଏକାନ୍ତ ଘର
ସାଙ୍ଗରେ ଯାହାର କାଟିଥିଲି ଦିନ
ମା' ବୋଲି ଡାକେ 'ଆଈ' ସେ ମୋର. (୧୦)

ଅତି ନିରିମାଖି ତାର ଜୀବନ
ଛାଡ଼ି ଯାଇଥିଲେ ସ୍ୱ ପରିଜନ
ସହୁଥିଲା ମୋର ଅଳି ଅରଦଳି
ଏକୁଟିଆ ବଞ୍ଚୁଥିଲା ଜୀବନ.............. (୧୧)

ତା ସାଥେ ବୁଲିଛି କେତେ ଯେ ଗାଁ
ବନ୍ଧସାହି ପୁଣି ମାଳପାଟଣା
ସବୁଠି ମିଳିଛି ଆଦର ସେନେହ
କେଉଁଠି ମୋ ମନ ହୋଇନି ଊଣା........ (୧୨)

ଦିନେ ମୁହଁ ସଞ୍ଜ ଛାଇ ଅନ୍ଧାରେ
ଗାଁ ସଡ଼କର ଚଲାବାଟରେ
ଆସୁଥିଲା ପଢ଼ାସାଥୀ ଗୟାଧର
ଅଶରୀରୀ ହେଲା ସବାର ତାରେ........... (୧୩)

ଗୋଟିଏ କୋଣରେ ଏକଲା ହୋଇ
ଗାମୁଛା କାନିରେ ମୁହଁ ଲୁଚାଇ
ଚୁପ୍‌ଚାପ୍ ବସିଥିଲା ଗୟାଧର
କାହାରି ସାଥିରେ କଥା ନ କହି........... (୧୪)

କାମଦେବ ସାର୍ ଜାଣନ୍ତି ଗୁଣି
ମନ୍ତରା ବାଲିକୁ ଛିଞ୍ଚିଲେ ଆଣି
'ଭାବବୋଉ' ମୁଁ ଚାଲି ଆସିଥିଲି
ମାରନାହିଁ ଚାଲିଯିବି ଏକ୍ଷଣି.................. (୧୫)

କୌତୁହଳୀମନ କୋମଳମତି
ଆଗ୍ରହରେ ସାଥୀ ନିରେଖୁଥାନ୍ତି
ଝାଡ଼ୁମୁଠା ଦାନ୍ତେ ଧରି ଗୟାଧର
ରାସ୍ତାରେ ଧାଇଁଲା ଅତି ଝଟତି............. (୧୬)

ପ୍ରଧାନ ଶିକ୍ଷକ ପଦବୀ ପାଇ
ଅବସର ନେଲେ ଅଚ୍ୟୁତ ଭାଇ
ପ୍ରଭୁ ଅଭିରାମ ପରମ ସେବକ
ବସା ବାନ୍ଧିଛନ୍ତି ପଙ୍କାମୁଣ୍ଡାଇ.................. (୧୭)

ଭାଗବତ ପାଣି, ହରି, ନିରଞ୍ଜନ
ଘନ, ବିଦ୍ୟାଧର ପୁଣି ଦୁଃଖିଶ୍ୟାମ
କୁମ୍ଭୀର ବିଜ୍ଞାନୀ ସୁଧାକର କର
କେଉଁଠି ରହିଲେ ଜଣାତ ନାହିଁ........... (୧୮)

ଚଣ୍ଡିଆଗଡ଼ିର ପାଣି ପବନ
ଚହଲାଇ ଦିଏ ମୋ ମନ ପ୍ରାଣ
ଇଚ୍ଛା ହୁଏ ଥରେ ଦେଖି ଆସନ୍ତି କି
ପିଣ୍ଡରେ ମୋ ଥାଉଁ ଥାଉଁ ପରାଣ......... (୧୯)

ଗାଁ ଶମଶାନ ମାଟିକୁ ଥରେ
ମୁଣ୍ଡରେ ଲଗାଇ କୁହନ୍ତି ବାରେ
ଜନମଦାତ୍ରୀକୁ କୋଳରେ ଧରିଛୁ
ପ୍ରଣାମ ଜଣାଏ ତୋ ପାଦ ତଳେ......... (୨୦)



# ଗୁରୁକୃପା

## (ଗୁରୁପୂର୍ଣ୍ଣିମା ଉପଲକ୍ଷେ)

## (୨)

ଗୁରୁ ବ୍ରହ୍ମା ବିଷ୍ଣୁ ଈଶ୍ୱର ଅଟନ୍ତି
　　　ଗୁରୁ ତ ଅଟନ୍ତି ପରମ ଦେବ
ଗୁରୁ ପାଦ ଅଟେ ପରମ ଆଶ୍ରୟ
　　　ଗୁରୁ ମୂର୍ତ୍ତି ଧ୍ୟାନ ପରମ ଭାବ (୧)

ଚାଲ ମନ ଚାଲ ଯିବାରେ ସଅଳ
　　　ଶ୍ରୀଗୁରୁ ପଙ୍କଜ ଚରଣ ତଳେ
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ
　　　ଆଦି ଫଳ ତୋତେ ମିଳିବ ହେଳେ (୨)

ଗୁରୁ ନାମ ଗୋଟି ପରମ ସମ୍ପଦ
　　　ଗଣ୍ଠି ଧନ କରି ବାନ୍ଧିଥା ତୁହି
ମହାଯାତ୍ରା ବେଳେ ନ ମିଳିବ କିଛି
　　　ବାଟ ଖର୍ଚ୍ଚ ତୋର ହେବରେ ସେହି (୩)

କିଏ ସେହି ବିଷ୍ଣୁ କିଏ ସେହି ବ୍ରହ୍ମା
　　　କିଏ ପୁଣି ସେହି ଶିବ ଶଙ୍କର
ସ୍ୱରୂପ ତାଙ୍କର ଅଛି କି ନ ଅଛି
　　　କିଏ ଜଣାଇବ ଠିକଣା ତାର (୪)

ମନ ବୋଲି ଯେଉଁ ଅଦୃଶ୍ୟ ବସ୍ତୁଟି
　　　ଅତି ବଳବାନ ଅତି ଚତୁର
ଏଠି ଥାଏ ପୁଣି ଏଠି ସେ ନ ଥାଏ
　　　ଘୂରି ବୁଲୁଥାଏ ସାରା ସଂସାର (୫)

ତାକୁ ସ୍ଥିର କଲେ ସବୁ ସ୍ଥିର ହେବ
କହିଛନ୍ତି ଗୁରୁ ଥରକୁ ଥର
ଅତି କଠିନ ସେ ଦୁରୂହ ବ୍ୟାପାର
ଲୋଡ଼ା ତାହା ପାଇଁ କୃପା ତାଙ୍କର (୬)

ଗୁରୁ କୃପା ବଳେ ଅସାଧ୍ୟ ସାଧନ
କରିପାରେ ଅତି ନଗଣ୍ୟ ଜନ
ଧ୍ରୁବ ପ୍ରହଲ୍ଲାଦ ବାଲ୍ମୀକି ମହର୍ଷି
ନଚିକେତା ପାଇଲେ ବ୍ରହ୍ମଜ୍ଞାନ (୭)

ଗୁରୁ କୃପା ବଳେ ଯୁବକ ନରେନ୍ଦ୍ର
ଜଗତ ଜିଣିଲେ ଧର୍ମ ସଭାରେ
ଗୁରୁଙ୍କର ବାଣୀ ପ୍ରଚାର କରି ସେ
ଆଦର୍ଶ ରଖିଲେ ସାରା ବିଶ୍ୱରେ (୮)

ଗୁରୁଙ୍କ ସ୍ୱରୂପ ଗୁରୁଙ୍କ ମହିମା
ବର୍ଣ୍ଣିବାର ଶକ୍ତି କାହାର ଅଛି
ସେ ଏକା ଜାଣିଛି ଯା' ଉପରେ ଗୁରୁ
ଢାଳି ଦେଇଛନ୍ତି କୃପାରୁ କିଛି (୯)

ଶୁଭଦିନ ଆଜି ଶୁଭ ଅବସରେ
ଗୁରୁପାଦ ପଦ୍ମେ ମିନତି ମୋର
ଯୋଗ୍ୟ ହେବି ତାଙ୍କ କୃପା ପାଇବାକୁ
ଆଉ ନାହିଁ କିଛି କାମନା ମୋର (୧୦)

□□□

# ଅମୃତ ଉତ୍ସବ

## (ଗୁରୁଦେବଙ୍କ ଜନ୍ମୋତ୍ସବ ଉପଲକ୍ଷେ)

### (୩)

ଆସ ଭାଇ ଭଉଣୀଗଣ
ଆନନ୍ଦେ ପୂଜିବା ଗୁରୁ ଚରଣ
ଆସ ଭାଇ ଭଉଣୀଗଣ । (ଘୋଷା)

ଶ୍ରାବଣର ପୂର୍ଣ୍ଣମୀ ଦିନ ପୁଣ୍ୟ ତିଥି ରାକ୍ଷୀ ବନ୍ଧନ
ମନ ଆନନ୍ଦରେ ଆଶ୍ରମକୁ ଯିବା
ଗୁରୁଙ୍କର ଆଜି ଜନମଦିନ
ଆସ ଭାଇ ଭଉଣୀଗଣ । (୧)

ଧୂପ ଦୀପ ଚନ୍ଦନ ଦେଇ ନବ ବସ୍ତ୍ର ଦେବା ପିନ୍ଧାଇ
ପାଦ ଧୋଇ ଦେବା ମାଳ ପିନ୍ଧାଇବା
ପାଦ ଉଦକ କରିବା ଗ୍ରହଣ
ଆସ ଭାଇ ଭଉଣୀଗଣ । (୨)

କର୍ପୂର ଆଳତି କରିବା ଶ୍ରୀମୁଖ ଶୋଭା ନିରେଖିବା
ନାନା ଜାତି ଫଳ ମିଷ୍ଟାନ୍ନ ଅର୍ପଣ
କରି କରିବା ପ୍ରସାଦ ସେବନ
ଆସ ଭାଇ ଭଉଣୀଗଣ । (୩)

ଆଞ୍ଜୁଳାରେ ଫୁଲ ଭରିବା ଶ୍ରୀପୟରେ ଅଞ୍ଜଳି ଦେବା
କାମନା ବାସନା ଢାଳି ତାଙ୍କ ପଦେ
ଗ୍ରହଣ କରିବା 'ଆଶିଷ' ଦାନ
ଆସ ଭାଇ ଭଉଣୀଗଣ । (୪)

ଆଶ୍ରମର ପ୍ରାଙ୍ଗଣେ ବୁଲି ଶ୍ରୀ ବିଗ୍ରହ ଦର୍ଶନ କରି
ଚାଲୁଥିବ ସେଠି ନାମ ସଂକୀର୍ତ୍ତନ
ଗୁରୁ ଭକ୍ତି ରସ କରିବା ପାନ
ଆସ ଭାଇ ଭଉଣୀଗଣ । (୫)

ଶେଷେ ଅନ୍ନ ପ୍ରସାଦ ପାଇ ନିଜ ଗୃହେ ଫେରିବା ଭାଇ
ଅମୃତ ଉତ୍ସବ ମହା ଅନୁଭବ
ମନେ ମନେ କରୁଥିବା ସ୍ମରଣ
ଆସ ଭାଇ ଭଉଣୀଗଣ । (୬)



# ଗୁରୁ ମହିମା

(୪)

ଗୁରୁ ତ ଅଟନ୍ତି ଗୁଣର ସାଗର

ଗୁରୁଙ୍କର ନାହିଁ ଅନ୍ତ

ଶାନ୍ତି, ଦୟା, କ୍ଷମା ରତ୍ନର ଭଣ୍ଡାର

ଗୁରୁ ହିଁ ପରମ ସତ୍ୟ । (୧)

ଗୁରୁଙ୍କ ମହିମା ବଖାଣି ପାରିବ

କାହାର ଅଛି ସାଧନ

ଗଭୀର ସାଗରେ ବୁଡ଼ିଯାରେ ମନ

ପାଇବୁ ଅମୂଲ୍ୟ ଧନ । (୨)

ଗୁରୁଙ୍କ ନିର୍ଦ୍ଦେଶ ପାଳି ଅହର୍ନିଶ

ଗୁରୁ ଭାବ ହୃଦେ ଧରି

ଦୁନିଆ ଦାଣ୍ଡରେ ରଖିବୁ ଆଦର୍ଶ

ସପ୍ତ ସିନ୍ଧୁ ହେବୁ ପାରି । (୩)

ଗୁରୁଙ୍କ ନିର୍ଦ୍ଦେଶ ପାଳି ଉପମନ୍ୟୁ

ଜିତିଛନ୍ତି ଏ ଜଗତ

ଏକଲବ୍ୟ ପୁଣି ଆରୁଣି କୌସ୍ଥ

ଗୁରୁ ଭକ୍ତି ପାଇଁ ଖ୍ୟାତ । (୪)

ଯଜ୍ଞ ରକ୍ଷା ପାଇଁ ଆଣିଥିଲେ ଡାକି

ବିଶ୍ୱାମିତ୍ର ଗୁରୁବର

କରିଥିଲେ ବଧ ତାଡ଼କା, ସୁବାହୁ

ରଘୁବଂଶୀ ରଘୁବୀର । (୫)

ଗୁରୁଙ୍କ ନିର୍ଦ୍ଦେଶ ମାନିଥିଲା ଧ୍ରୁବ

ଘୋର ଅରଣ୍ୟରେ ବସି

ଜପି ଥିଲା ନାମ ନିଷ୍ଠାର ସହିତ

ପାଇଥିଲା ବ୍ରହ୍ମ ରାଶି । (୬)

ଗୁରୁଙ୍କୁ ନମଣ ସାମାନ୍ୟ ମଣିଷ

ଗୁରୁ ସାକ୍ଷାତ ଈଶ୍ୱର

ଗୁରୁ ଦେହେ ଦେଖ ପରମ ପୁରୁଷ

ଗୁରୁ କୃପା ଏକା ସାର । (୭)

❑❑❑

# ଗୁରୁ ଚରଣେ ଶରଣ

(୫)

ଚାଲ ଗୁରୁ ଚରଣେ ପଶିବା ଶରଣ
ଗୁରୁ ଏକା କାଟି ଦେବେ ଭବ ବନ୍ଧନ। (ଚାଲ).....(ଘୋଷା)

ସଂସାର ସାଗରେ ବଣା ନ ହୁଅ ଭାଇ
ଉତ୍ତାଳ ତରଙ୍ଗେ ଭାସି ଯିବୁରେ ତୁହି
ନ ଥିବ ଥଳକୂଳ, ପ୍ରାଣ ହେବ ବିକଳ
କ୍ରନ୍ଦନ ହେବ ସାର, ମନେ ତୁ ହେତୁ କର
ଅକାରଣ ହୋଇ ଯିବଟି ତୋ ଜୀବନ.....ଚାଲ (୧)

ସଂସାର ସାଗରୁ ପାରି କରିବା ପାଇଁ
କାଣ୍ଡାରୀ ରୂପରେ ଗୁରୁ ଅଛନ୍ତି ରହି
ସେ ପଦେ ଆଶ୍ରା କରି, ଭଜ ତୁ ହରି ହରି
ସକଳ ଦୁଃଖ ଶୋକ, ଆନନ୍ଦେ ହେବୁ ପାରି
ଗୁରୁ କୃପା ଧନ ପାଇଁ କର ଯତନ.....ଚାଲ (୨)

ଗୁରୁଦେବ ଅଟନ୍ତି ସ୍ୱୟଂ ନାରାୟଣ
ବାଞ୍ଛା କଳ୍ପତରୁ ବାଞ୍ଛା କରି ପୂରଣ
ଆଦରେ ଧରି ହାତ, କଢ଼ାଇ ନେବେ ବାଟ
ଜନ୍ମ ମୃତ୍ୟୁ ଯାତନା, ନ ହେବ ଆଉ ଭେଟ
ଅଜ୍ଞାନ ବିନାଶ କରି ଦେବେଟି ଜ୍ଞାନ.....ଚାଲ (୩)

ଗୁରୁ ତୋର ପିତାମାତା ସଖା ସୋଦର
ପରମ ଆଶ୍ରୟ ପୁଣି ଅତି ନିଜର
ଅଭୟ ଚରଣରେ, ଶରଣ ଗଲେ ଥରେ
ଫେରିବୁ ନାହିଁ ଆଉ, ଘୋର ମାୟା ସଂସାରେ
ସଫଳ ହୋଇବ ତୋର ମାନବ ଜନ୍ମ......ଚାଲ (୪)



# ଶ୍ରୀଗୁରୁ ବନ୍ଦନା

## (୬)

ଗୁରୁଦେବ ଗୁରୁଦେବ ଗୁରୁଦେବ ହରି
ଗୁରୁକୃପା କଲେ ଭବ ସିନ୍ଧୁ ହେବୁ ପାରି ।
ଗୁରୁଦେବ ଗୁରୁଦେବ କରୁଣାସାଗର
ଗୁଣ ରୂପ ବିବର୍ଜିତ ମହିମା ଅପାର ।
ଅସାର ସଂସାରେ ଏକା ଗୁରୁ ନାମ ସାର
ହେଳା ନ କରିଣ ମନ ସୂତ୍ରେ ଗୁନ୍ଥି ଧର ।
କଦାଚିତେ ନ ମଣିବ ଗୁରୁଙ୍କୁଟି ନର
ନର ଦେହେ ନାରାୟଣ ପ୍ରକାଶ ତାଙ୍କର ।
ଗୁରୁ ଚିନ୍ତ ସଦା ମନ ନ କରିଣ ହେଳା
ଲଭିବୁ ତୁ ଚିନ୍ତାମଣି ନ ହୁଅ ବାଉଳା ।
'ଜୟଗୁରୁ' ମହାମନ୍ତ୍ର କଳିଯୁଗ ପାଇଁ
ଅଭ୍ୟାସ କରି ପାରିଲେ ତରିଯିବୁ ତୁହି ।
ଗୁରୁ ପିତା ଗୁରୁ ମାତା ଗୁରୁ ସଖା ତୋର
ସଦା ଜପୁଥାଅ 'ଗୁରୁଦେବ ଦୟାକର' ।
ଜୀବନ ଅନ୍ତିମକ୍ଷଣେ ଗୁରୁଙ୍କ ମୂରତି
ଦୃଷ୍ଟି ପଥାରୁଢ଼ ହେଉ କର ତାଙ୍କୁ ସ୍ତୁତି ।
ବାଞ୍ଛା କଳ୍ପତରୁ ବାଞ୍ଛା କରିବେ ପୂରଣ
ଅବିରତ କରୁଥାଅ ତାଙ୍କ ପ୍ରୀତି କର୍ମ ।
ବ୍ରହ୍ମା ବିଷ୍ଣୁ ଶିବ ଗୁରୁ ଜୟଗୁରୁ ଜୟ
ପରଂବ୍ରହ୍ମ ଗୁରୁଦେବ ଜଣାଏ ପ୍ରଣାମ ।

❒❒❒

# ଭଜ ଶ୍ରୀଗୁରୁ ଚରଣ

(୭)

ଗୁରୁ ଚରଣ
ଭଜିଲେ ଜିଣିବୁ ଜନ୍ମ ମରଣ
ତୁଟି ଯିବ ଭୟ ହୋଇବୁ ନିର୍ଭୟ
ସଫଳ ହେବ ତୋ ମାନବ ଜନ୍ମ ॥୧॥

ଗୁରୁ ମହିମା
କେ ପାରିବ ଜାଣି ତାହାର ସୀମା
ଗୁରୁ କୃପା ବଳେ ଲଂଘି ଯିବୁ ହେଳେ
ସଂସାର ସାଗର ଦୁଃଖ ଯାତନା ॥୨॥

ଗୁରୁ ହିଁ ବିଧି
ବିଷ୍ଣୁ ବାମଦେବ ନିର୍ଗୁଣ ନିଧି
ଗୁରୁ ବିନା ସବୁ ଅସାର ଜାଣିବୁ
ନ ପାରିବୁ ଲଂଘି ଭବ ବାରିଧି ॥୩॥

ଗୁରୁ ତୋ ସାଥୀ
ଜୀବ ଯିବା ବେଳେ ଗୁରୁ ସାରଥୀ
ଆଣ୍ଟ କରି ଧର ଶ୍ରୀଗୁରୁ ପୟର
ଭାଇ ବନ୍ଧୁ ଦାରା ସମ୍ପଦ ସାଥୀ ॥୪॥

ଗୁରୁ ହିଁ ଏକା
ଗୁରୁ ସେବା କର ହୋଇ ନିଶଙ୍କା
ଗୁରୁ ଏକମାତ୍ର ତାରଣେ ସମର୍ଥ
ଜାଣିଥା ସେ ତୋର ପରମ ସଖା ॥୫॥

# ମନ

(୮)

ବନ ପୋଡ଼ିଗଲେ ଜାଣଇ ଦୁନିଆ
ମନ ପୋଡ଼ିଗଲେ ଜାଣିବ କିଏ
ମନକୁ ଜାଣିବା କାଠିକର ପାଠ
ଯିଏ ଜାଣେ ସିଏ ନିସ୍ତରି ଯାଏ... (୧)

ପ୍ରଜାପତି ପରି ମନ ଘୁରି ବୁଲେ
ସୁଖ ଦୁଃଖ ଭୋଗ ଲାଳସା ଧରି
ଇନ୍ଦ୍ରିୟଗଣଙ୍କୁ ପରଜା ସଜାଇ
ନିଜେ ସାଜିଥାଏ ରଜା ସବୁରି... (୨)

ମନ ତ ଅଟଇ ବନ୍ଧନର ହେତୁ
ସେହି ପୁଣି ଅଟେ ମୁକ୍ତିର ଦ୍ୱାର
ବିଷୟ ରସରେ ବୁଡ଼ାଇ ଥାଏ ସେ
ଛନ୍ଦି ଦେଉଥାଏ ଥରକୁ ଥର... (୩)

ଏଇ ମନ ପାଇଁ କେତେ ଋଷି ମୁନୀ
କାଳ କାଳ କରୁଅଛନ୍ତି ତପ
ତଥାପି ମନକୁ ନ ପାରନ୍ତି ଧରି
କେତେ ଶକ୍ତି ତାର ବଳ ଅମାପ... (୪)

ନକରି ଲଢ଼େଇ ବୁଝେଇ ଶୁଝେଇ
ଧରିବାକୁ ହେବ ତାର ମୂଳକୁ
କହିଛନ୍ତି ପରା ପରମ ଈଶ୍ୱର
ରାମକୃଷ୍ଣ ଦେବ ଭକ୍ତ କୁଳକୁ... (୫)

ମନ ବୁଝିଗଲେ ସମସ୍ତେ ବୁଝନ୍ତି
ମନ ମୂଳେ ସିନା ଏହି ଜଗତ
ମନ ମାନିଗଲେ ଜଗତ ଜିତିବ
ସାଧୁସନ୍ଥଙ୍କର ଏ ବାଣୀ ସତ... (୬)

ମନ ଜିତିଛନ୍ତି ଦେବର୍ଷି ନାରଦ
କରିଛନ୍ତି ତାକୁ ଯାନ ନିଜର
ମନ ଜୟ କଲେ ଆଚରିଣ ତପ
ମହର୍ଷି ହୋଇଲେ ସେ ରତ୍ନାକର... (୭)

ବୁଦ୍ଧ ମହାବୀର ମନକୁ ଜିତିଣ
ଜିତେନ୍ଦ୍ରିୟ ହେଲେ ଏ ଧରାଧାମେ
ଗୁରୁ କୃପା ହେଲେ ମନକୁ ଜିତିବା
ଲୟ ରଖିଥିବା ପ୍ରଭୁଙ୍କ ନାମେ... (୮)

❒❒❒

# ବିଭୁ କୃପା

(୯)

କେତେ ଥର ନିରବେ ବିକଳେ
ଡାକିଛି ମୁଁ ହେ ଜଗତ ସାଇଁ
ଅସହାୟ ଅଲୋଡ଼ା ଜୀବନେ
ତବ କୃପା ପାଇଲି ତ ନାହିଁ... (୧)

ତୁମର ତ ସବୁ ବଡ଼
ନାହିଁ କିଛି ତୁମ ପାଖେ ସାନ
ତୁମେ କିନ୍ତୁ ନିଜେ ସାନ ହୁଅ
ଭକତକୁ କରିଣ ମହାନ... (୨)

ଯେତେବେଳେ ଭରା ଅଭିମାନେ
ମନମୋର ବିଳପି ଉଠଇ
ଖଞ୍ଜି ଦିଅ ମନେ ନାନା ଭାବ
ତବ କୃପା ଅନୁଭବ ପାଇଁ... (୩)

କୃପା ନୁହେଁ ରକ୍ତ ମାଂସଧାରୀ
ଅବା କେଉଁ କଂକ୍ରିଟ ପଦାର୍ଥ
ଅନୁଭବୀ ଜାଣେ ଅନୁଭବେ
କୃପା ଏକ ଅଙ୍ଗେ ଲିଭା ସତ୍ୟ... (୪)

ପରୀକ୍ଷା ମୁଁ କରିନାହିଁ କେବେ
ନାହିଁ ମୋର ଏଡ଼େ ଟାଣପଣ
ଆକୁଳରେ ଡାକିଅଛି ଖାଲି
ବିପଦରେ ପଶିଛି ଶରଣ... (୫)

କେବେ କେବେ ଘଟିଛି ଘଟଣା
ନଗଣ୍ୟ ସେ ଜନମତ ପାଇଁ
ମୋ ଅନ୍ତରେ ଜାଗିଛି ପ୍ରେରଣା
କୃପାକଣା ସିଏ ତ ମୋ ପାଇଁ... (୬)
ବଦ୍ଧ ମୁହିଁ ସଂସାର ଫାଶରେ
ସ୍ୱାର୍ଥ ଅବା ଛାଡ଼ିବି କେମନ୍ତେ
ନୀରବରେ ଡାକୁଛି ତୁମକୁ
ରହିଥାଅ ମୋର ସାଥେ ସାଥେ... (୭)
ସଂସାରର ସୁଖଶାନ୍ତି ଯାହା
ଏ ଜନମେ ହୋଇଲା ସପନ
ଏକମାତ୍ର ତୁମେ ପ୍ରଭୁ ସତ୍ୟ
ଗୁରୁ ରୂପେ ଦେଇଅଛ ଜ୍ଞାନ... (୮)
ନିଃସଙ୍ଗତା ଦଂଶେ ଯେବେ ପ୍ରାଣେ
ଅସରା ଏ ନିଃସଙ୍ଗ ଜୀବନେ
ଯୋଗାଇଛ ସତ୍‌ସଙ୍ଗୀ ସମୟେ
ସମ୍ପର୍କିତ ତୁମ୍ଭ ପ୍ରିୟ ନାମେ... (୯)
କରିନାହିଁ ଶୁଭ କର୍ମ କିଛି
ଶୁଭଫଳ ମିଳିବ କେମନ୍ତେ
ଅଳି କରେ ଧୈର୍ଯ୍ୟ ଶକ୍ତି ପାଇଁ
କର୍ମଫଳ ଭୋଗିବା ନିମନ୍ତେ... (୧୦)
ତୁମେ ଯଦି ସତ୍ୟ ପ୍ରଭୁ
ଶିବ ପୁଣି ସୁନ୍ଦର ହିଁ ତୁମେ
ଥରେ ହେଲେ ଦିଅ ଅନୁଭବ
ମରଦେହ ଅବସାନ କ୍ଷଣେ... (୧୧)



# ସୁନାବେଶ ଦର୍ଶନ

(୧୦)

ଆଷାଢ଼ର ଏକ ଅପରାହ୍ଣେ
ସ୍କୁଲ ଛୁଟି ହୋଇ ଯିବା ପରେ
ପ୍ରସ୍ତାବିଲେ 'ବ୍ରଜବାବୁ' ସହକର୍ମୀ ମୋର
ଯିବାପାଇଁ ନୀଳାଚଳ ଧାମେ..... (୧)

ଶୁକ୍ଳପକ୍ଷ ଏକାଦଶୀ ତିଥି
ସୁନାବେଶେ ସାଜିବେ ଠାକୁର
ଦରଶନେ ଯିବା ଆମେ ଦୁହେଁ
ମନେ ଜାଗେ ଅଭିଳାଷ ମୋର..... (୨)

ସୁନାବେଶ ଶୁଣିଥିଲି ଖାଲି
ଦେଖିବାର ନଥିଲା ସୁଯୋଗ
ମୋ ମନରେ ଆସିଲା ଭାବନା
ଏହା ଏକ ସୁବର୍ଣ୍ଣ ସୁଯୋଗ..... (୩)

ପ୍ରଭୁଙ୍କର ଇଚ୍ଛା ବିନା କେହି
ନୀଳାଚଳେ ନପାରଇ ଯାଇ
ତେବେ କ'ଣ ଡାକୁଛନ୍ତି ପ୍ରଭୁ
ସୁନାବେଶ ଦେଖିବାର ପାଇଁ..... (୪)

ମେରୁଦଣ୍ଡେ ଅସୁବିଧା ଅତି
ଚାଲିବାକୁ ଅସମର୍ଥ ମୁହିଁ
ପାଞ୍ଚଶହ ମିଟର ଚାଲିଲେ
ତିନିଥର ବିଶ୍ରାମ ଲୋଡ଼ଇ..... (୫)

ତଥାପି ଆସିଲା ଦମ୍ଭ
ସୁନାବେଶେ କରିବି ଦର୍ଶନ
କିଏ ଜାଣେ ଏ ଜୀବନେ ଆଉ
କେବେ ପୁଣି ନୋହିବି ଭାଜନ..... (୬)

ଯାତ୍ରା କଲୁ ପୁରୀ ଅଭିମୁଖେ
ନ ଫେରିଣ ଘରକୁ ସେ ଦିନ
ଉପବାସ ଥିଲା ଦୁହିଁଙ୍କର
ଶୁକ୍ଳପକ୍ଷ ଏକାଦଶୀ ଦିନ..... (୭)

ପହଞ୍ଚିଲୁ ଆଡ଼ପ ମଣ୍ଡପେ
ଆଗେ ଆଉ ଯିବ ନାହିଁ ଗାଡ଼ି
ନିଷେଧିଲେ ଆରକ୍ଷୀ ମଣ୍ଡଳ
ଶୁଣି ମୋର ହଂସାଗଲା ଉଡ଼ି..... (୮)

ବଡ଼ଦାଣ୍ଡେ ଦିଶେ ନାହିଁ ଭୂମି
ଦିଶେ ନାହିଁ ଦୋକାନ ବଜାର
ଯେଉଁଆଡ଼େ ଦୃଷ୍ଟି ଫେରାଇଲେ
ଦିଶେ ଖାଲି ଜନ ପାରାବାର..... (୯)

ପ୍ରତେ ହେଲା ସତେ ଅବା
ରତ୍ନାକର ଛାଡ଼ି ନିଜ ସ୍ଥାନ
ବଡ଼ଦାଣ୍ଡେ ହୋଇଅଛି ଉଭା
କୋଳେ ଧରି ଜନତା ତରଙ୍ଗ..... (୧୦)

ଶ୍ରୀଗୁଣ୍ଡିଚା ମନ୍ଦିର ପାଖରୁ
ସିଂହଦ୍ୱାର ଆଖି ପାଉନାହିଁ
ଏତେବାଟ ଚାଲିବି କେମନ୍ତେ
ସାହସତ ମୋର ହେଉନାହିଁ..... (୧୧)

ବନ୍ଧୁ ମୋର କେତେ ଆଶା ନେଇ
ଆଣିଛନ୍ତି ସଙ୍ଗ କରି ମୋତେ
ଅରଜିବେ ପୁଣ୍ୟ ଫଳ ଅବା
ଦରଶନ କରାଇଣ ସାଥେ..... (୧୨)

ସଙ୍କୋଚରେ ନପାରିଲି କହି
ଏଇଠାରେ ମୋତେଦିଅ ଛାଡ଼ି
ଦରଶନ କରି ଆସ ତୁମେ
ଯିବି ମୁହିଁ ଏଠାରୁ ବାହୁଡ଼ି..... (୧୩)

କାତରେ ଡାକିଲି ପ୍ରଭୁ
ସାହା ହୁଅ ବୁଦ୍ଧି ଦିଶୁ ନାହିଁ
ଆସିଥିଲି ତବ ଦରଶନେ
ସତେ କ'ଣ ଫେରିଯିବି ମୁହିଁ..... (୧୪)

ଫେରିବାକୁ ନାହିଁ ରାହା
ଚଉପାଶେ ଜନତା ସାଗର
ଲହଡ଼ି ଭାଙ୍ଗୁଛି ଅବା
ଦେଖିବାକୁ ସୁନାବେଶ ତୋର..... (୧୫)

ଉପବାସେ ଅବସନ୍ନ ଦେହ
ଚାଲିବାକୁ ପାଦେ ନାହିଁ ବଳ
ଟଳମଳ ହେଉଅଛି ପାଦ
ଶରୀରରୁ ବହେ ଶ୍ରମ ଝାଳ..... (୧୬)

କିଛିକ୍ଷଣ କଟିଗଲା ପରେ
ଅଭାବିତ ଘଟଣା ଘଟିଲା
ବ୍ୟାକୁଳିତ ହୃଦୟ ମୋହର
ଅଚାନକ ଶାନ୍ତ ହୋଇଗଲା..... (୧୭)

ପ୍ରଭୁଙ୍କ ପହଣ୍ଡିସମ
ଜନତାର ପ୍ରଖର ସ୍ରୋତରେ
କିଛି ବାଟ ଭାସି ଯାଏ ମୁହିଁ
ଛିଡ଼ା ହୁଏ ପୁଣି ସେହିଠାରେ..... (୧୮)

ତଳେ ଲାଗି ନାହିଁ ପାଦ
ପାଇନାହିଁ ସାହାରା କାହାରି
ଅଭିନବ ଅନୁଭବ ଏହା
କୃପା ତାଙ୍କ ସାହାରା ତାଙ୍କରି..... (୧୯)

ଏହିପରି ଶୂନ୍ୟେ ଭାସି ଭାସି
ପହଞ୍ଚିଲି ସିଂହଦ୍ୱାରେ ଯାଇ
ରଥପରେ କରିଲି ଦର୍ଶନ
ସୁନାବେଶେ ବ୍ରହ୍ମାଣ୍ଡ ଗୋସାଇଁ..... (୨୦)

ଅବସର ନେବା ପରେ ଦିନେ
ପୁଣି ଏକ ଆଷାଢ଼ ମାସରେ
ଦେଖା ହୁଏ ବନ୍ଧୁଙ୍କ ସହିତ
ଶ୍ରୀଗୁଣ୍ଡିଚା ବାହୁଡ଼ା ମଝିରେ..... (୨୧)

ରୋମନ୍ଥନ କରିଥିଲୁ ସ୍ମୃତି
ସୁନାବେଶ ଦେଖିବା ଦିନର
ସେ 'ଦେଖିବା' ଥିଲା ଶେଷ ଦେଖା
ଏ ଯାବତ ତାଙ୍କର ଓ ମୋର..... (୨୨)



# ଶରତ ଶୋଭା

(୧୧)

ବରଷା କାଳ ଯାଇଛି ଚାଲି ଶରତ ଆସେ ଧୀରେ
ଜଗତ ହିତେ ଜଗତମାତା ଆସନ୍ତି ଧରା ପରେ ।
ଆକାଶ ଶୋଭା ଦିଶେ ନିର୍ମଳ ବାଦଲମାଳ ଭାସେ
କାଶ ତଣ୍ଡିର ଶୁଭ୍ର ବସନେ ଧରଣୀରାଣୀ ହସେ ।
ବନ ପ୍ରାନ୍ତର ସବୁଜ ଘାସେ ଶିଶିର ବିନ୍ଦୁ ଶୋହେ
ଗଙ୍ଗଶିଉଳି ପସରା ମେଲି ମହକେ ମନ ମୋହେ ।
ବାଡ଼ି ବଗିଚା ଦିଶେ ସୁନ୍ଦର ପୁଷ୍ପ ସମ୍ଭାର ଘେନି
ରଙ୍ଗ ପସରା ମେଲେଇ ଦେଇ ହସେ ପ୍ରକୃତି ରାଣୀ ।
ମୃଦୁ ଗୁଞ୍ଜରେ ଉଡ଼େ ମଧୁପ ଫୁଲକୁ ଫୁଲ ଛୁଇଁ
ଗନ୍ଧ ବହଇ ମନ୍ଦ ମରୁତ କୁସୁମ ପରଶ ପାଇ ।
ସରସୀ ଜଳ ଦିଶେ ନିର୍ମଳ ନିର୍ମଳ ନଈ ନାଳ
ସଡ଼କ ପଥ ହୁଏ ସୁଗମ ନାହିଁ ବରଷା ଜଳ ।
ମୃଦୁ ହିଲ୍ଲୋଳେ ଲହରୀ ଖେଳେ କେଦାରେ ଧାନ ଶିଖା
କୃଷକ ଭାଇ ପେଟ ପୂରଇ ମନେ ନଥାଏ ଦକା ।
ଆଦ୍ୟ ଜନନୀ ଖୁଦୁରୁକୁଣି ଏଇ ଶରତ କାଳେ
ଆଶିଷ ବାରି ଦିଅନ୍ତି ଢାଳି ଆସି କୁମାରୀ ମେଳେ ।
ମଙ୍ଗଳଦାତା ଜ୍ଞାନ ଦେବତା ଆସନ୍ତି ଧରା ଧାମେ
ବିତରିଥାନ୍ତି ଜ୍ଞାନ, ସମୃଦ୍ଧି ସାରା ଜଗତ ଜନେ ।

ବିଶ୍ୱ ଜନନୀ ସିଂହବାହିନୀ ଜଗତହିତ ପାଇଁ
ତେଜିଣ ନିଜ ନିବାସ ଧାମ ମଞ୍ଚେ ଆସନ୍ତି ଧାଇଁ।
ସାରା ଜଗତ ଆନନ୍ଦ ଚିତ୍ତ ଦେବୀଙ୍କ ଆଗମନେ
ଆରାଧନାରେ ଯାଆନ୍ତି ମଜ୍ଜି ଅତି ଆନନ୍ଦ ମନେ।
ପୁରୁଷ ନାରୀ ମୁଖେ କାହାରି ଦୁଃଖର ଦାଗ ନାହିଁ
ଆବାଳ ବୃଦ୍ଧ ମାତି ଉଠନ୍ତି ଦେବୀ ବନ୍ଦନା ଗାଇ।
ମାତୃ ଆଶିଷେ ଉଠଇ ପୂରି ଜଗତ ଜନମନ
କର୍ତ୍ତବ୍ୟ କର୍ମେ ଲାଗନ୍ତି ଲଭି ନୂତନ ଉଦ୍ଦୀପନ।
ଶରଦଶଶୀ ଉଠଇ ହସି ନିର୍ମଳ ଗଗନରେ
ତା ସୁଧାକର ଅତି ମଧୁର ଦର୍ଶନେ ମନ ହରେ।
ଜହ୍ନିଫୁଲରେ ସଜାଇ କୋଠି ଚାନ୍ଦ ବନ୍ଦନା କରି
କୁମାରୀ ମିଳି କରନ୍ତି ଅଳି ଦିଅ ଆଶିଷ ଭରି।
ତୁମରି ପରି ଲାବଣ୍ୟ ତେଜ ବର ପାଇବା ପାଇଁ
ମାଗୁଣି ଆମ କର ପୂରଣ ଆହେ ନିଶୀଥ ସାଇଁ।
ଶରତ ରାଜ ସରିତ ଆସେ ହେମନ୍ତ ଇଙ୍ଗିତରେ
ଧରଣୀ ରାଣୀ ହୁଅଇ ସଜ ନୂତନ ଅଭିସାରେ।



# ଜୟହିନ୍ଦ୍ ହାଇସ୍କୁଲ

(୧୨)

ଅତି ଅନୁନ୍ନତ ଧୋଇଆ ଅଞ୍ଚଳେ,
ଗଢ଼ି ଉଠିଅଛି ବାଣୀମନ୍ଦିର
ପରାଣେ ଜାଗଇ ସ୍ୱଦେଶ ପୀରତି,
ଉଚ୍ଚାରଣ କଲେ ନାଁଟି ତାର ।
ଅନତି ଦୂରରେ ବେଢ଼ି ରହିଛନ୍ତି,
ଚଉପାଶେ ଚାରିଗ୍ରାମ ତାହାର
'ଜୟହିନ୍ଦ୍' ନାମ ବହନ କରିଛି,
ଅଧୀନ ନୁହେଁ ସେ କେଉଁ ଗ୍ରାମର ।
ପୁଣ୍ୟତୋୟା ନଦୀ ବ୍ରାହ୍ମଣୀ କୂଳରେ,
ଛିଡ଼ା ହୋଇଛି ସେ ମୁକ୍ତ ଭାବରେ
ବିତରିବା ପାଇଁ ଜ୍ଞାନର ଆଲୋକ,
ଅଗଣିତ କେତେ ଶିଶୁ ପ୍ରାଣରେ ।
ତା ଯଶ ସୁବାସେ ଆକର୍ଷିତ ହୋଇ,
ଦୂର ଦୂରାନ୍ତରୁ ଉଚ୍ଚ ଆଶାରେ
ଆସୁଥିଲେ ଛାତ୍ର ଜ୍ଞାନ ଲାଭ ପାଇଁ,
ରହୁଥିଲେ ତାର ଛାତ୍ରାବାସରେ ।
ନଥିଲାତ ସେଠି ଦୋକାନ ବଜାର,
ମନୋରଞ୍ଜନର ଅନ୍ୟ ବ୍ୟବସ୍ଥା
'ଗୁରୁକୁଳ' ପରି ରହୁଥିଲେ ଛାତ୍ର,
ଜ୍ଞାନ ଆହରଣେ ରଖିଣ ଆସ୍ଥା ।
ଗୁରୁମାନେ ଥିଲେ ଜ୍ଞାନର ଆଧାର,
ସଦ୍‌ଗୁଣ ରାଶିର ଅଧିକାରୀ
ଛାତ୍ର ବତ୍ସଳତା ଗୁଣରେ ସଭିଏଁ,
ଜୟ କରିଥିଲେ ହୃଦ ସବୁରି ।
ଧୋଇଆ ଅଞ୍ଚଳ ହୋଇଥିଲେ ସୁଦ୍ଧା,
ସବୁ ଉତ୍ସବ ତା ପ୍ରାଙ୍ଗଣେ ହୁଏ
ସରସ୍ୱତୀ ପୂଜା, ଗଣେଶ ଚତୁର୍ଥୀ,
ପ୍ରାଇଜ୍ ଉତ୍ସବ ମନକୁ ମୋହେ ।
ସରକାରଙ୍କର ବିଭିନ୍ନ ବିଭାଗୁଁ,
ଜ୍ଞାନୀ ଗୁଣୀଜନ ଅତିଥି ଭାବେ
ଯୋଗ ଦେଉଥିଲେ ଏହି ଅନୁଷ୍ଠାନେ,
ନ ବହିଣ କୁଣ୍ଠା ମନରେ ଲବେ ।
ଶିକ୍ଷା ବିଭାଗର ଉଚ୍ଚ ଅଫିସର,
ଆସିଛନ୍ତି ପରିଦର୍ଶନ ପାଇଁ
ଖୁସି ହୋଇଛନ୍ତି ପରିବେଶ ଦେଖି,
ଶୃଙ୍ଖଳା ଓ ପରିଚାଳନା ପାଇଁ ।

ପ୍ରଧାନ ଶିକ୍ଷକ ବିକ୍ରମ ରାଉତ, ଚରଣ ବନ୍ଦନା କରେ ତାଙ୍କର
ଅନୁଷ୍ଠାନର ସେ ପିତାମାତା ଥିଲେ, ମୂର୍ତ୍ତିମନ୍ତ ଥିଲେ ସେ ଆଦର୍ଶର ।
ପଡ଼ିଆ ମଝିରେ ଛିଡ଼ା ହୋଇଥିଲା, ବିଦ୍ୟାଳୟ ଗୃହ ମୁକ୍ତ ଭାବରେ
ବକ୍ଷସ୍ଥଳ ତା'ର ବ୍ୟବହୃତ ଥିଲା, ସର୍ବସାଧାରଣ ଚଲା ପଥରେ ।
ଅବରୁଦ୍ଧ କଲେ ଯାତାୟାତ ପଥ, ସମ୍ମୁଖେ ଫାଟକ ଦେଲେ ଲଗାଇ
ନାରିକେଳ ବୃକ୍ଷ ରୋପଣ କରିଲେ, ବିଦ୍ୟାଳୟ ଶୋଭା ମଣ୍ଡନ ପାଇଁ ।
ଦଳପରେ ଦଳ ଯାଉଥିଲେ ଛାତ୍ର, ବିଦ୍ୟା ଶେଷ କରି କର୍ମ ପଥରେ
ବ୍ୟାପି ଯାଉଥିଲା ବିଦ୍ୟାଳୟ ନାମ, କୃତୀ ଛାତ୍ରଙ୍କର ଯଶ ଖ୍ୟାତିରେ ।
ଆମେ ଥିଲୁ ତାର ଦ୍ୱାଦଶ ଦଳରେ, ମନରେ କାହାରି ନଥିଲା ଦ୍ୱନ୍ଦ୍ୱ
ସର୍ବଶ୍ରେଷ୍ଠ ଫଳ ମିଳିଯିବ ଅବା, ଆଶା କରିଥିଲେ ଗୁରୁଜୀ ବୃନ୍ଦ ।
ଅନୁକୂଳ ବେଳ ପହଞ୍ଚିଲା ଆସି, ସରକାର ନେଲେ ଦାୟିତ୍ୱ ତାର
ଭାଗ୍ୟ ବଦଳିଲା ବଦଳିଲା ସବୁ, ବଦଳିଲେ ଗୁରୁ ଥରକୁ ଥର ।
ସମୟ ବଦଳେ ପ୍ରକୃତି ବଦଳେ, ବଦଳିବା ଅଟେ ସୃଷ୍ଟିର ଧର୍ମ
ଅବସ୍ଥା ବଦଳେ ଜୀବନ ବଦଳେ, ବଦଳଇ ପୁଣି ଅଦୃଷ୍ଟ କର୍ମ ।
ଅଦୃଷ୍ଟ ଇଙ୍ଗିତେ ଅଦୃଶ୍ୟ ହେଲେଣି, କେତେ ଗୁରୁ କେତେ ସତୀର୍ଥ ଗଣ
ବାକିଅଛୁ ଯେତେ ଅନାଇ ରହିଛୁ, ତାଳଗଛ ମଝି ବରଡ଼ା ସମ ।
ପଚାଶ ବରଷ ହେଲାଣି ଆଜିକି, ଛାଡ଼ି ଆସିଅଛି ତା ପରିସର
ଦେବାଳୟ ସମ ଉଭା ହୋଇଛି ସେ, ଦୂରରୁ ଜଣାଏ ମୁଁ ନମସ୍କାର ।

❑❑❑

# କୁଶଳେଶ୍ୱର

(୧୩)

ଜୟ ହେ ଶିବ ଶଙ୍କର ଜୟ ତ୍ରିପୁରାରୀ
ଜୟ ହେ ମଙ୍ଗଳମୟ ବିଶ୍ୱ ହିତକାରୀ ।
ଅକର୍ମାଦାନୀ ବୋଲାଅ ତୁମ୍ଭେ ଏ ସଂସାରେ
ସଦା ନିବାସ ତୁମ୍ଭର ଭକ୍ତ ମାନସରେ ।
ତୁମେ ଯେ ମହିମାମୟ ମହା ଯୋଗେଶ୍ୱର
ମଙ୍ଗଳ ପ୍ରତୀକ ତୁମେ ହେ କୁଶଳେଶ୍ୱର ।
ଅନାଥର ନାଥ ତୁମେ ଅଗତିର ଗତି
ତୁମ୍ଭ ଆଶ୍ରିତ ଜନର ନ ଆସଇ ଭୀତି ।
ତୁମେ ତ ସୃଷ୍ଟିର ଆଦି ତେଣୁ ଆଦିଦେବ
ନାମ ବହିଅଛ ପରା ଦେବଙ୍କର ଦେବ ।
କଳିଯୁଗେ ପ୍ରଭୁ ତୁମେ ପ୍ରତ୍ୟକ୍ଷ ଦେବତା
ଆର୍ତ୍ତରେ ଡାକିଲେ ଭକ୍ତେ କହିଥାଅ କଥା ।
ସୃଷ୍ଟି ରକ୍ଷା କଲ ପ୍ରଭୁ ବିଷ ପାନ କରି
ମସ୍ତକେ ଧରିଲ ଚନ୍ଦ୍ର ଅଶିବ ନିବାରି ।
ଆରତରେ ତୁମ୍ଭ ପଦେ ପଶିଲେ ଶରଣ
କିଛି ନ ବିଚାରି କର ଦୁଃଖ ନିବାରଣ ।
ଦୟାଳୁ ପଣେ ତୁମ୍ଭର ନାହିଁ ପଟାନ୍ତର
ସ୍ତୁତିକରେ ଭକ୍ତ କହି 'କରୁଣାବତାର' ।

ଅସାର ସଂସାରେ ପ୍ରଭୁ ତୁମ୍ଭେ ଏକା ସାର
କୃପା କରି ବିରାଜ ମୋ ହୃଦୟ କନ୍ଦର ।
ପରମା ଶକ୍ତି ଯାହାର ପଦରେ କିଙ୍କର
ମୁଁ ଛାର ବର୍ଣ୍ଣିବି କିସ ମହିମା ତାଙ୍କର ।
ସବୁଠାରେ ବିରାଜିତ ତୁମ୍ଭେ ତ ସ୍ୱୟମ୍ଭୁ
ଏ ଦୀନ ଜଣାଣ ବାରେ ଘେନାକର ପ୍ରଭୁ ।
ବଳିଅଛି ମନ ମୋର ତବ ଦରଶନେ
କୃପାକର ଯିବି ନାଥ ତୁମ୍ଭ ବିଜେ ସ୍ଥାନେ ।



*କୁଶଳେଶ୍ୱର ମନ୍ଦିର କେନ୍ଦୁଝର ଜିଲ୍ଲାରେ-*
*'କୁଶଭଦ୍ରା' ନଦୀତଟରେ ଅବସ୍ଥିତ*

# ବାଇଧର ସାର୍

## (୧୪)

ପବିତ୍ର ଆଷାଢ଼ ମାସ ପୁଣ୍ୟ ତିଥି ଗୁରୁ ପୂର୍ଣ୍ଣିମାରେ
ବାହୁଡ଼ିଲେ ବାଇଧର ସାର୍ ମରଲୀଳା ଅବସାନ ପରେ ।
ତାଙ୍କ ସହ ପ୍ରଥମ ସାକ୍ଷାତ ଭଡ଼ା ଘରେ ରହୁଥିଲା ବେଳେ
ଯାଇଥିଲି ପରାମର୍ଶ ପାଇଁ ମୋ ଚାକିରି ଅସୁବିଧା କାଳେ ।
ଆଦରେ ଆବେଗେ ମୋତେ ଦେଇଥିଲେ କେତେ ଉପଦେଶ
ମନେପଡ଼େ ସବୁ ଆଜି ଆଜିଠାରୁ ସବୁ ହେଲା ଶେଷ ।
ନଥିଲେ ସେ ସାଧାରଣ ଗୁରୁ ନ ଥିଲେ ସେ ସାମାନ୍ୟ ମଣିଷ
ପର ଉପକାର ବ୍ରତ ଥିଲା ତାଙ୍କ ଜୀବନ ଆଦର୍ଶ ।
ମମତା ଡୋରିରେ ମୋତେ ବାନ୍ଧିଥିଲେ ଅତି ନିବିଡ଼ରେ
ପ୍ରତିଦିନ ଭେଟୁଥିଲି ତାଙ୍କୁ ସ୍କୁଲରୁ ଫେରନ୍ତା ବାଟରେ ।
ତାଙ୍କ ଝିଅ ପିଙ୍କି ଥିଲା ମୋ ପୁଅର ସହଧ୍ୟାୟୀ ସାଥୀ
ନାନୀ(ତାଙ୍କ ସ୍ତ୍ରୀ)ଙ୍କ ସଙ୍ଗାତ ଥିଲା ମୋର ଯିଏ ପିଲାଦିନ ସାଥୀ ।
କ୍ରମେ ଦୃଢ଼ତର ହେଲା ସାମାଜିକ ସମ୍ପର୍କ ଆମ୍ଭର
ନ ରହିଲା ବ୍ୟବଧାନ କିଛି ପିଲାମାନେ ଲାଗିଲେ ନିଜର ।
ତାଙ୍କ ପାଖେ ବସି ବସି ଶୁଣିଛି ମୁଁ କେତେ କେତେ କଥା
ପିଲାଦିନ କଥା ପୁଣି ଚାକିରିର କେତେ ଅଭିଜ୍ଞତା ।
ମହତ ପଣିଆ ତାଙ୍କ ସବୁଥିରେ ବାରି ହେଉଥାଇ
ମନେ ମନେ ଶିଖୁ ଥିଲି ମୁହିଁ ନିରବରେ ସମ୍ମାନ ଜଣାଇ ।

ଦାନଶୀଳ ଥିଲେ ସାର୍ ତ୍ୟାଗ ତାଙ୍କ ଜୀବନ ଆଦର୍ଶ
ନୀତିହୀନ ସମାଜକୁ ଦେଖି ଭୋଗୁଥିଲେ ଅଶାନ୍ତି ଅଶେଷ ।
ଅନ୍ୟାୟ ଦେଖିବା ଠାରୁ ସଂସାରରୁ ଚାଲି ଯିବା ,ଭଲ
ଆଲୋଚନା ମାଧମରେ ଏହା କହୁଥିଲେ ମୋତେ ବାରମ୍ବାର ।
କିଛିଦିନ ତଳେ ଗଲି ତାଙ୍କୁ ଥରେ ଦେଖିବାର ପାଇଁ
ନିରବ ନିଶ୍ଚଳ ଭାବେ ବିଛଣାରେ ରହିଥିଲେ ଶୋଇ ।
ଆଖି ଖୋଲି ନ ଚାହିଁଲେ ନ କହିଲେ ପଦେ ହେଲେ କଥା
ମୁଖରିତ କଣ୍ଠ ତାଙ୍କ ଜପୁଥିଲା ମନ୍ତ୍ର ନିରବତା ।
ହୃଦୟରେ କୋହ ଚାପି ଫେରିଲି ମୁଁ ଅଶ୍ରୁଳ ନୟନେ
ଭାବୁଥିଲି ମୋ ଜୀବନ କଥା ଆଙ୍କୁଥିଲି ଛବି ମନେମନେ ।
ପ୍ରଣତି ବାଢୁଛି ଆଜି ସେ ଅମର ଆତ୍ମା ଉଦ୍ଦେଶ୍ୟରେ
ସଦ୍‌ଗତି ଦିଅ ନାରାୟଣ ସବୁ ତାଙ୍କ ସତ୍‌କର୍ମ ଶେଷରେ ।



*(ଏକାଦଶାହ ଉପଲକ୍ଷେ ଲିଖିତ)*

# ପର ଉପକାର

(୧୫)

ପର ଉପକାର ପୁଣ୍ୟମୟ ବ୍ରତ ପାଳନ୍ତି ମହତ ଜନ
ନଦୀ ପରବତ ସବିତା ଶଶାଙ୍କ ପାଳିଥାନ୍ତି ନିଶିଦିନ।
ବୃକ୍ଷଟିଏ ଦେଖ ପର ଉପକାରେ ସର୍ବସ୍ୱ ବିତରିଥାଏ
ମହମବତୀଟି କ୍ଷୁଦ୍ର ହେଲେ ସୁଦ୍ଧା ପର ପାଇଁ ଜଳିଯାଏ।
ଫୁଲଟିଏ ଫୁଟି ସୁବାସ ବିତରେ ପର ଉପକାର ପାଇଁ
ଜୀବ ଜଗତକୁ ତୋଷଇ ପାଦପ ଫଳ ଭାରେ ନଇଁ ନଇଁ।
ଶିଖାଉଛି ନଦୀ ଦାନର ମହତ୍ତ୍ୱ ଅବିରତ ବହି ବହି
ପର୍ବତ ଶିଖାଏ ସହନଶୀଳତା ଅବିଚଳେ ଛିଡ଼ା ହୋଇ।
ଦାନ କଲେ ଅସ୍ଥି ଦଧୀଚି ମହର୍ଷି ଜୀବନକୁ ତୁଚ୍ଛ ମଣି
ଦେବ ଲୋକଠାରୁ ନର ଲୋକ ଯାଏ କୀରତି ହୁଅନ୍ତି ଗୁଣି।
ଏଇ ଭାରତରେ ଦାନ କରିଥିଲେ ଅଯୋଧ୍ୟାର ନରନାଥ
ସୂର୍ଯ୍ୟବଂଶୀ ଚନ୍ଦ୍ର ରାଜା ହରିଶ୍ଚନ୍ଦ୍ର ଦାନବୀର ନାମେ ଖ୍ୟାତ।
ସକଳ ଶକତି ଆଧାର ସବିତା ଜଗତ ମଙ୍ଗଳକାରୀ
ବାଣ୍ଟି ଦେଉଛନ୍ତି କିରଣ ସମ୍ପଦ ଅବିରତ ଘୂରି ଘୂରି।
ଜଗତର ହିତ ସାଧଇ ମରୁତ ଅନୁକ୍ଷଣ ବହିବହି
କର୍ତ୍ତବ୍ୟ ସାଧନେ ଥାଏ ସେ ନିରତେ ମନରେ କୁଣ୍ଠା ନବହି।
ବରଷି ଦିଅନ୍ତି ସୁଧାମୃତ ଚନ୍ଦ୍ର ଜଗତ ମଙ୍ଗଳ ପାଇଁ
ଉଦ୍ଭିଦ ଜଗତେ ଔଷଧୀୟ ଗୁଣ ଭରିଯାଏ ତାହା ପାଇଁ।

ସହୁଛି ଅର୍ଦ୍ଦଳି ଅତ୍ୟାଚାର କେତେ ଆମରି ଧରଣୀ ମାତା
'ସର୍ବଂସହା' ନାମ ବହନ କରିଛି ଆଚରିଣ ନିରବତା।
ନିରବତା ଅଟେ ପ୍ରକୃତିର ଭାଷା ନିରବେ ହୁଅଇ ବୁଝି
ନିରବେ ଅନ୍ତରେ ଅନୁଭବ କର ପ୍ରକୃତିର ଋଣ ଶୁଝି।
ନିରବରେ ଦେଖ ଜଗତ ସ୍ରଷ୍ଟାଙ୍କୁ ଅନ୍ତର ନିଭୃତ କୋଣେ
ମାନବ ଜୀବନ ହୋଇବ ସଫଳ ନିସ୍ତରିବା ଜଣେ ଜଣେ।



# ଗୁଣଗ୍ରାହୀ ବନ୍ଧୁଙ୍କ ପ୍ରତି

(୧୬)

ଗୁଣ ଗ୍ରାହୀ ବନ୍ଧୁ ଏକ ପାଇଛି ଜୀବନେ
ଦେଇଛନ୍ତି ମହାପ୍ରଭୁ ଖୋଜି ନାହିଁ ଦିନେ ।

ଭାବନାକୁ ଭାଷା ରୂପ ଦେବା ପାଇଁ ମୋତେ
କଲମ ଧରାଇ ହାତେ କହିଛନ୍ତି କେତେ ।

ଭାସି ଆସେ ପ୍ରଶ୍ନବାଚୀ ଦୂର ସଂସାରରେ
ସମ୍ଭାବନା ରଖିଥାନ୍ତି ନୂତନ ସୃଷ୍ଟିରେ ।

ପାଇନାହିଁ ଆଶୀର୍ବାଦ ସରସ୍ୱତୀଙ୍କର
କିପରି ଚାଲିବ କୁହ କଲମ ତୁମର ।

ବିଚିତ୍ରକର୍ମାଙ୍କର ଏ ସୃଷ୍ଟି ଅନୁପମ
ତା ମଧ୍ୟେ ମୁଁ ଏକ ସୃଷ୍ଟି ବଣମଲ୍ଲୀ ସମ ।

ଅନ୍ତରାଳେ ଲୁଚି ଲୁଚି ଝଡ଼ିଯିବି ମୁହିଁ
ଯୋଗ୍ୟ ନୁହେଁ ସମାଜର ସେବା କାର୍ଯ୍ୟ ପାଇଁ ।

କିସ ଅବା ଗୁଣ ଅଛି ମୋ କ୍ଷୁଦ୍ର ଜୀବନେ
ଆକୃଷ୍ଟ କରି ଆଣିବି ଜ୍ଞାନୀ ଗୁଣୀ ଜନେ ।

ବନ୍ଧୁ କିନ୍ତୁ ଆଶାବାଦୀ ସଙ୍କଳ୍ପ ତାଙ୍କର
ବନ୍ଧ୍ୟା ମରୁଭୂମି ବୁକେ ବହିବ ନିର୍ଝର ।

ସିଞ୍ଚୁଛନ୍ତି ସୃଷ୍ଟିବାରି ଅତି ଆବେଗରେ
ଅନୁର୍ବର ମୋ ମନର ଟାଙ୍ଗର ଭୂମିରେ।

ପ୍ରେରଣା ଭଣ୍ଡାର ସେ ମୋ ସୃଷ୍ଟି ସମ୍ଭାରର
କୃତଜ୍ଞତା ଜଣାଉଛି ତାଙ୍କୁ ବାରମ୍ବାର।

ଅଭିଯୋଗ ସତ୍ତ୍ୱେ କରିଛନ୍ତି ଉତ୍ସାହିତ
ମୋ ସୃଷ୍ଟିର ସବୁ ଶ୍ରେୟ ତାଙ୍କୁ ସମର୍ପିତ।

❏❏❏

## ବନ୍ଧୁମିଳନେ

(୧୭)

କି ଯୋଗରେ ଆଜି ପାହିଲା ରଜନୀ କି ଯୋଗେ ପଡ଼ିଛି ମାହେନ୍ଦ୍ର ବେଳ
ଆସର ବସିଛି ଉତ୍ତୀର୍ଣ୍ଣ ବୟସେ କୈଶୋରର ସ୍ମୃତି କରି ସମ୍ବଳ।
ପଚାଶ ବରଷ ବିତିଲାଣି ଆସି ଛାଡ଼ି ଆସିଛନ୍ତି ବିଦ୍ୟା ମନ୍ଦିର
କର୍ମ ତାଡ଼ନାରେ କେ କାହିଁ ରହିଲେ କିଏ ବା ରଖିଛି ହିସାବ ତାର।
ଛିଡ଼ା ହୋଇଥିଲା ବିଦ୍ୟା ନିକେତନ ଧୋଇଆ ଅଞ୍ଚଳ ସମ୍ପଦ ଶିରୀ
ମେଳ ହୋଇଥିଲେ କିଶୋର କିଶୋରୀ ବାଣୀ ଆରାଧନା ଲକ୍ଷ୍ୟ ସବୁରି।
'ଜୟହିନ୍ଦ୍ ହାଇସ୍କୁଲ' ବୋଲି ତା'ର ନାଁ ଡାକ ଥିଲା ସେ ଅଞ୍ଚଳରେ
ଆସୁଥିଲେ କେତେ କିଶୋର କଳିକା ଜ୍ଞାନ ଲାଭ ଇଚ୍ଛା ଧରି ଅନ୍ତରେ।
ମନେପଡ଼େ ଆଜି ଅଷ୍ଟମ ସୋପାନ ମନେପଡ଼େ ସେହି ଶ୍ରେଣୀ କୋଠରୀ
ପ୍ରଥମେ ଯେ ଦିନ ରଖିଥିଲି ପାଦ ଅଜଣା ଭୟରେ ଉଠିଲି ଥରି।
ପଢ଼ି ନଥିଲି ମୁଁ ସପ୍ତମ ଶ୍ରେଣୀ କି ଜାଣିବି କେମନ୍ତେ ଅଷ୍ଟମ ପାଠ
ସାଥୀଗଣ ମେଳେ ଲଜ୍ଜିତ ହୋଇଲେ ହୋଇଯିବ ସତେ ମୋ ମୁଣ୍ଡ କାଟ।
ପ୍ରଥମ ପରୀକ୍ଷା ଫଳ ପ୍ରକାଶିଲା ପାଞ୍ଚଟି ବିଷୟରେ ଅଣଷଠି
ଗୁଞ୍ଜରଣ ହେଲା ଗୁରୁଜୀ ମହଲେ କଥାବାର୍ତ୍ତା ହୋଇ ଦେଇଥିଲେ କି।
କେତେ କଟକଣା ଥିଲା ସେତେବେଳେ ପୁଅ ଝିଅ କଥା ନ ହେବା ପାଇଁ
ମୋ ନାମକୁ T.C. (Truth Candle) କେଉଁ ନାମ ଦେଇ କଥା ହେଉଥିଲେ ସାଥୀ ମୋ ପାଇଁ।
ସେତେବେଳେ ସିନା ରାଗ ଆସୁଥିଲା ଏବେ କିନ୍ତୁ ତାହା ହରି ଚନ୍ଦନ
ମନେ ପକାଉଛି ସାଥୀ ମେଳେ ବସି କରିବାକୁ ପୂର୍ବ ସ୍ମୃତି ଚାରଣ।
କାଲି ଯେଉଁମାନେ ସହପାଠୀ ଥିଲେ ଆଜି ବନ୍ଧା କିନ୍ତୁ ଭିନ୍ନ ଡୋରିରେ
ଜୀବନ କା ସାଥେ ହୋଇଥିଲା ବନ୍ଧା କେ ପୁଣି ଆତ୍ମୀୟ ସାମାଜିକରେ।

ବନ୍ଧୁ ପୁଣି କେହି ଅଧାମ୍ନ ସମ୍ବନ୍ଧେ
ସମସ୍ତେ ନିଜର ଲାଗନ୍ତି ମୋତେ
ବହି ଚାଲିଛି ମୋ ଜୀବନ ସରିତ
ସ୍ନେହ ସହଯୋଗ ମମତା ସାଥେ।

କେତେ କେତେ ସ୍ମୃତି ଉଙ୍କି ମାରୁଅଛି
ପଛକୁ ଫେରୁଛି କଳ୍ପନା ନେତ୍ର
ଦେଖୁଛି ସଭିଙ୍କୁ କିଶୋର ବୟସେ
ଅତି କମନୀୟ ଚପଳ ରୂପ।

ମନେ ପଡ଼ିଯାଏ ପ୍ରାର୍ଥନା ସଙ୍ଗୀତ
ଆଗେ ଗାଇବାକୁ ଥିଲା ନିର୍ଦ୍ଦେଶ
ଅବୋଧ ବାଳକ ଗାଇଥିଲି ବୋଲି
ମିଳିଥିଲା କେତେ ସୁ ପରିହାସ।

ବାଳକ ତ ନୁହଁ କାହିଁକି କହୁଛ
ବାଳିକା କାହିଁକି କହିଲ ନାହିଁ
କ୍ଷୁଦ୍ର ମସ୍ତିଷ୍କରେ ଏତେ ବଡ଼ ପ୍ରଶ୍ନ
ଉତ୍ତରତ ଦେଇ ପାରିଲି ନାହିଁ।

ଅଭିମାନେ ମନ ଭାଙ୍ଗି ଯାଇଥିଲା
ସେଦିନ ବନ୍ଧୁଙ୍କ ପରିହାସରେ
ସେହି ବନ୍ଧୁ ଆଜି ପରମ ସହାୟ
ବାକି ଜୀବନର ଚଲାପଥରେ।

ନିଶବ୍ଦେ ଧାଉଁଛି ଜୀବନ ସରିତ
ମହାକାଳ ସିନ୍ଧୁ ଭେଟିବା ପାଇଁ
ଛାଡ଼ି ଆସିଲେଣି କେତେ ମଧୁ ସ୍ମୃତି
ଖୋଜିଲେ ଏବେ କି ମିଳିବ ସେହି।

ମହାସିନ୍ଧୁ ସ୍ରୋତେ ବିଲୀନ ହେଲେଣି
କେତେ ବନ୍ଧୁ କେତେ ଆତ୍ମୀୟଗଣ
ଗତିଶୀଳ ଆମେ ସଭିଏଁ ସେପଥେ
ମଉଳି ଗଲାଣି ଭରା ଯୌବନ।

ଶୁଭ ଦିନ ଆଜି ବାନ୍ଧିଛି ସଭିଙ୍କୁ
ମହୋତ୍ସବ ଭଳି ହେଉଛି ପ୍ରତେ
ଆନ୍ତରିକ ଶ୍ରଦ୍ଧା ଜ୍ଞାପନ କରୁଛି
ଉଦ୍ୟୋଗୀ ବନ୍ଧୁଙ୍କ ମଙ୍ଗଳ ହିତେ।

□□□

*('ଜୟହିନ୍ଦ' ହାଇସ୍କୁଲର ୧୯୬୭ ମସିହା ମାଟ୍ରିକ୍ୟୁଲେସନ୍ ବ୍ୟାଚ୍‌ର ବନ୍ଧୁମିଳନରେ ଲିଖିତ)*

# ସ୍ୱାଗତିକା

(୧୮)

ଆଜି କି ଶୁଭ ଯୋଗରେ ପାହିଲା ରଜନୀ
ହସୁଛି ଦୁର୍ଗା ମଣ୍ଡପ ସାଙ୍ଗସାଥୀ ଘେନି
ମନେ ନାହିଁ କା'ର ତ୍ରାସ
ଭରିଛି ସର୍ବ ଅନ୍ତରେ ଅପୂର୍ବ ଉଲ୍ଲାସ । (୧)
ପଚାଶ ଦଶକ ପରେ ଆସିଛି ଏ ଦିନ
ଆନନ୍ଦରେ ପୂରି ଉଠେ ଦେହ ମନ ପ୍ରାଣ
ଏଇ ମିଳନ ମୁହୂର୍ତ୍ତେ
ସ୍ୱାଗତ କରୁଛି ସାଥୀ ଲେଖି ଏହି ଗୀତ । (୨)
ଜନ୍ମ ମୃତ୍ୟୁ ବ୍ୟବଧାନ ଅଟଇ ଜୀବନ
ଧାଉଁଛି କ୍ଷିପ୍ର ଗତିରେ ନ ନେଇ ବିଶ୍ରାମ
ମହାକାଳ ସିନ୍ଧୁ ସ୍ରୋତେ
ହଜିଲେଣି କେତେ ସାଥୀ ଶିକ୍ଷକ ସମେତେ । (୩)
ପୁଣ୍ୟ ଅବସର ଆଜି ଏ ମହା ମିଳନେ
ଜଣାଇବା ଶ୍ରଦ୍ଧାଞ୍ଜଳି ସେ ଅମର ପ୍ରାଣେ
ତାଙ୍କୁ କରିବା ସ୍ମରଣ
ସ୍ମରଣ କରିବା ପୁଣି ତାଙ୍କ ଗୁଣ ଗ୍ରାମ । (୪)
ଜୀବନରେ ଅଙ୍ଗେ ଲିଭା ଦୁଃଖ ସୁଖ ଯେତେ
ବାଣ୍ଟିବା ନିଜ ଭିତରେ ହରଷିତ ଚିତ୍ତେ
ଏହି ମହା ଅବସର
ବହନ କରିବ ଆମ ଜୀବନ ସ୍ୱାକ୍ଷର । (୫)

□□□

*(ଜୟହିନ୍ଦ୍ ହାଇସ୍କୁଲ ୧୯୬୭ ମସିହା ମାଟ୍ରିକ୍ୟୁଲେସନ ବ୍ୟାଚ୍‌ର ବନ୍ଧୁ ମିଳନ ଉପଲକ୍ଷେ)*

# ବିଦାୟ ସଂଗୀତ

(୧୯)

ଏ ମଧୁ ମିଳନ ଉଲ୍ଲାସ କୁସୁମ ବିଚ୍ଛେଦେ ମଉଳି ପଡ଼ିବ
ଏ ମଧୁର ସ୍ମୃତି ମାନସ ପଟରେ ଚିର ଅମଳିନ ରହିବ ।
କେତେ କାଳ ଅନ୍ତେ ପଡ଼ିଥିଲା ଯୋଗ ମିଶିଥିଲେ ସାଥୀଗଣ
ତୃପ୍ତ ହେଉଥିଲା ଦେହ ମନ ପ୍ରାଣ ଶୁଣି ତାଙ୍କ ସମ୍ଭାଷଣ ।
ନିଶବ୍ଦେ ଧାଉଁଛି ଜୀବନ ସରିତ ମହାକାଳ ସିନ୍ଧୁ ମୁଖେ
ଛାଡ଼ି ଯାଉଅଛି ମଧୁର ସ୍ମାରକୀ ଚଳନ୍ତି ସମୟ ବୁକେ ।
ଆଜି କଥା ନାହିଁ କାଲିକିରେ ଭାଇ କାଲିକି ଘଟିବ ଯାହା
ଆମକୁ ଅଜଣା ନିୟତିକୁ ଜଣା ବିଶ୍ୱପତି ଏକା ସାହା ।
ମନେ ରଖିଥିବା ସଭିଏଁ ସଭିଙ୍କୁ ଆଗାମୀ ମିଳନ ପାଇଁ
ଏତିକି କାମନା ଏ ଶୁଭ ଆସରେ ପୂର୍ଣ୍ଣ କର ବିଶ୍ୱ ସାଇଁ ।
ବିଦାୟ ଏ ନୁହେଁ ଶୁଭ ଭିତ୍ତି ସ୍ତମ୍ଭ ଆଗାମୀ ସୂଚନା ଦିଏ
ସୃଷ୍ଟି ନିୟମରେ ଆଲୋକ ଯେପରି ଅନ୍ଧାର ପଛରେ ଧାଏଁ ।
ଆହେ ବନ୍ଧୁଗଣ, ଆହେ ବନ୍ଧୁଗଣ
ଚିରଞ୍ଜିବୀ ହେଉ ଏ ମିଳନ,
ପୁଲକିତ ହେଉ ମନପ୍ରାଣ, ଆହେ ବନ୍ଧୁଗଣ ।

❑❑❑

*(ବନ୍ଧୁମିଳନ ୧୯୬୭ ମସିହା, ଜୟହିନ୍ଦ୍ ହାଇସ୍କୁଲ)*

# ମୁକ୍ତିପଥ

(୨୦)

ମାୟା ଖେଳଘରେ ଖେଳୁରେ ମାନସ
ମାୟା ଖେଳଘରେ ଖେଳୁ
ବୁଡ଼ିଯିବ ବେଳ ସରିଯିବ ଖେଳ
ସାବଧାନ ହୁଅ ବେଳୁ....... (୧)

ଖେଳ ସରିଗଲେ ନ ପାରିବୁ ଫେରି
ହରାଇବୁ ଥଳକୂଳ
ଅଥଳ ବାରିଧି ପାରି ହେବା ପାଇଁ
ସାହା ଏକା ଆଦିମୂଳ........ (୨)

'ସେ' ଆଦି ଅନାଦି ସେହି ପୁଣି ନିଧି
ଯତନେ ସାଇତି ରଖ
ସାଇତି ପାରିଲେ ହୃଦୟ ସିନ୍ଧୁକେ
ପାଇବୁ ପରମ ସୁଖ....... (୩)

ସୁଖ ବୋଲି ଯାହା ଜନନେତ୍ରେ ଦିଶେ
ସେ ଅଟେ ନକଲି ହୀରା
ମରୀଚିକା ସମ ଦୂରରୁ ଦୂରକୁ
ନେଇ କରେ ପଥହରା....... (୪)

ମାୟାଜାଲ କାଟି ବନ୍ଧନରୁ ଫିଟି
ଚାଲିଆ ଅବୁଝା ମନ
ଗୁରୁ ପଦେ ଲୋଟି କାନ୍ଦ ମଥା ପିଟି
ମିଳିବ ଅମୂଲ୍ୟ ଧନ....... (୫)

ଗୁରୁ ଦୟା କଲେ ଅଧିକାରୀ ହେବୁ
ପାଇବୁ ପରମ ପଦ
ସେହି ତୋର ଗତି ସେହି ତୋ ମୁକତି
ପିଅ ସେହି ମକରନ୍ଦ....... (୬)



# ଛପି ଛପି ବସନ୍ତ ଆସେ
## (ସ୍ମୃତି ରୋମନ୍ଥନ)
## (୨୧)

ଚାଳିଶି ବରଷ ହେଲାଣି ଆଜିକି
ହିସାବ କରୁଛି ମୁଁ ମନେ ମନେ
ହଜାଇ ଦେଇଛି ବସନ୍ତ ପରଶ
କେଉଁ ସିନ୍ଧୁତୀର ସେ କେଉଁ ବନେ।
ଲୁଚି ଯାଇଥିଲା ଯେଦିନ ବସନ୍ତ
ଚେଇଁ ଉଠିଥିଲା ଦାବାଗ୍ନି ନିଆଁ
ଥରି ଉଠିଥିଲା ହୃଦୟ କନ୍ଦର
ଜଳି ଯାଇଥିଲା ସ୍ମୃତି ଦୁନିଆଁ।
ଝରୁଥିଲା ସଦା ଆଖିରୁ ଶ୍ରାବଣ
ଯେତେ ବୁଝାଇଲେ ନ ମାନି ମନା
ଶୁଖି ଯାଇଥିଲା ହୃଦୟ ସରସୀ
ମରି ଯାଇଥିଲା ସବୁ କାମନା।
ନିରାଶା ଅନ୍ଧାରେ ଆଶା ଜ୍ୟୋତି ରୂପେ
ଜଳୁଥିଲେ ବେନି କୁସୁମ କଳି
ବିକଶିତ ହୋଇ ସୁବାସ ବାଣ୍ଟିବେ
ମନେ ସଦା ହେଉଥିଲି ମୁଁ ଭାଳି।
ମିଳିଥିଲା ମୋତେ ମଙ୍ଗଳ ଆଶିଷ
ମଙ୍ଗଳମୟଙ୍କ କରୁଣା ବାରି
ସିକ୍ତ କରିଥିଲା ଦଗ୍ଧୀଭୂତ ପ୍ରାଣ
ଚାଲୁଥିଲି ବାଟ ତା ଅନୁସରି।
ସଂସାର ଅଟଇ ମାୟା ଖେଳଘର
ଏ ଖେଳରେ ନାହିଁ ପରମ ଶାନ୍ତି
ଶାନ୍ତି ଖୋଜ ମନ ନକରି ଅମାନ୍ୟ
ଗୁରୁ ପାଦ ପଦ୍ମେ ରଖିଣ ମତି।
ମାନି ଯାଇଥିଲା ଅମାନିଆ ମନ
ପଛ କଥା କିଛି ନ ଭାବି ମନେ
ଚାଲୁଥିଲା ବାଟ ଆଗକୁ ଆଗକୁ
ଚାହୁଁ ନଥିଲା ସେ ପଛକୁ ଦିନେ।
କି ଯୋଗରେ ଆଜି ଭେଟ ମିଳିଗଲା
ବନ୍ଧୁ ଜଣେ ଏକ ଦରଦୀ ପ୍ରାଣ
କଥା ପ୍ରସଙ୍ଗରେ ଖୋଲି ହୋଇଗଲା
ଅତୀତର ସବୁ ପେଡ଼ି ପୁରାଣ।
କେତେ ସ୍ମୃତି କେତେ ବିଜନ ମୁହୂର୍ତ୍ତ
ସୁନୀଳ ସାଗର ରହିଛି ସାକ୍ଷୀ
ଲିଭାଇ ଦେଇନି ସ୍ମୃତି ପଦ ଚିହ୍ନ
ବେଳାଭୂମି ତା'ର ବାଲୁକା ରାଶି।

ବନ୍ଧୁ ଚାଲିଗଲେ ବନ୍ଧୁଙ୍କ ବାଟରେ    ଖୋଲି ଦେଇଗଲେ ରୁଦ୍ଧ ଦୁଆର
ଏକପରେ ଏକ ଜୀବନ୍ତ ଘଟଣା    ଦୃଷ୍ଟି ପଥାରୁଢ଼ ହେଉଛି ମୋର।
ପାହି ଆସିଲାଣି ବିନିଦ୍ର ରଜନୀ    ଆଖି ଆଜି ମୋର ଶୋଇବ ନାହିଁ
ଅତୀତ ଜୀବନ ଚିତ୍ର ସେ ଦେଖିବ    ଥକିବ ନାହିଁ ସେ ଦେଇଛି କହି।
ଯେତେ ମଧୁମୟ ହେଲେ ହେଁ ଅତୀତ    ପରିଣତି ତାର ବିଷାଦମୟ
ନିଃସଙ୍ଗ ଜୀବନେ କେତେ ତୁ ଖୋଜିବୁ    ଖୋଜି ଖୋଜି ଶେଷେ ହେବୁ ଅଥୟ।
ଆଉ କେତେ କାଳ ଅଛି ତୋ ଜୀବନ    ବେଳୁ ସାବଧାନ ହୋଇଯା ତୁହି
ଫେରିଆସି ଦେଖ ମହାକାଳ ସ୍ରୋତ    କେଡ଼େ ବେଗେ ସତେ ଯାଉଛି ଧାଇଁ।
ପଛ କଥା ଆଉ ଭାବ ନାହିଁ ମନ    ଆନନ୍ଦ ସେଥିରେ ମିଳଇ ନାହିଁ
ଭଜ ନିରନ୍ତର ଶ୍ରୀଗୁରୁ ପୟର    ସବୁ ଦୁଃଖ ତୋର ନେବେଟି ସେହି।



# ଅନ୍ତର୍ଦ୍ୱନ୍ଦ୍ୱ

(୨୨)

ଭଲ ଲାଗେ ନାହିଁ କିଛି ନିରବତା ଅବା କୋଳାହଳ
ଅନ୍ତରରେ ବ୍ୟାକୁଳତା ମନ ଖାଲି ଉହଳ ବିକଳ ।
ଆଖି ଲୁହେ ଝରି ଝରି ଯାଏ ହୃଦୟର ଯେତେ ଓରିମାନା
ଶାନ୍ତ ହୁଅ ଶାନ୍ତ ହୁଅ ବୋଲି ବୁଝାଇଲେ ମାନୁ ନାହିଁ ଜମା ।
ଅନ୍ତର୍ଦ୍ୱନ୍ଦ୍ୱ କାରଣକୁ ମୁହିଁ ଖୋଜି ଖୋଜି ପଡ଼ିଲିଣି ଥକି
ମନ ମଧ୍ୟେ ଅସଂଖ୍ୟ ତରଙ୍ଗ ସୃଷ୍ଟି କରେ ଅଶାନ୍ତ ଝଡ଼ କି ?
ତରଙ୍ଗତ ସ୍ୱଭାବେ ସ୍ୱାଧୀନ ଏକ ପରେ ଏକ ଆସେ ଯାଏ
ରୋକିବାକୁ ଗତିପଥ ତାର ବଳ ନାହିଁ ଅବଶ ଶରୀରେ ।
ଅଶ୍ରୁଧାରେ ବହି ଯାଉ ସବୁ ପୁଞ୍ଜୀଭୂତ ଅଶାନ୍ତ କାମନା
ଊର୍ମିହୀନ ହୋଇ ଯାଉ ମନ ତବ ପଦେ ଏତିକି ପ୍ରାର୍ଥନା ।
ସବୁ ଥାଇ କିଛି ନାହିଁ ଭାବ ଆଜନ୍ମରୁ ଅଙ୍ଗେ ଲିଭାଉଛି
ବ୍ୟାକୁଳିତ ଅନ୍ତର ମୋହର ସତ୍ୟ ଯାହା ପାରେ ନାହିଁ ବୁଝି ।
ଆସିବା ବେଳରେ ଏକା ଯିବାବେଳେ ଏକା ସେ ଯାଉଛି
ନେଉନାହିଁ ସାଙ୍ଗସାଥୀ ସଙ୍ଗେ ସଂସାରରେ ଯାହାଙ୍କୁ ଲୋଡ଼ିଛି ।
ଦୟାକର ଦୟାକର ପ୍ରଭୁ ଖୋଲି ଦିଅ ମାୟାର ବନ୍ଧନ
ମନପ୍ରାଣ ହେଉ ନିସ୍ତରଙ୍ଗ 'ନିଃସଙ୍ଗତା' ହେଉ ତବ ଦାନ ।
ନହକିଆ ବାଉଁଶ ଅଗରେ ଏକୁଟିଆ ବଣିଟିଏ ପରି
ମନ ମୋର ମାଜିବ ନିଜକୁ ଖୋଜିବାକୁ ସ୍ୱରୂପ ତୁମରି ।

ହରାଇଛି ଏକାଗ୍ରତା ପ୍ରଭୁ ମାଗୁଅଛି ଦିଅ ହେ ଫେରାଇ
ଆଙ୍କଦିଅ ହୃଦୟ ମନ୍ଦିରେ ତୁମ୍ଭ ଛବି ରହିବି ଅନାଇ ।
ଧ୍ୟେୟ ହେଉ ଅବିରତ ଚକାଚକା ଦୁଇଟି ନୟନ
ଖୋଜି ବୁଲୁଥାଉ ଆଖି ଜଳସ୍ଥଳ ଅବା ଗିରିବନ ।
କରିବିନି ଦୁଃଖ ଆଉ ସାଙ୍ଗସୁଖ ମିଳୁ ବା ନମିଳୁ
କଟିଯାଉ ପ୍ରତିଟି ମୁହୂର୍ତ୍ତ ତୁମ୍ଭ ଗୁଣ କୀର୍ତ୍ତି ଭାଳୁ ଭାଳୁ ।
ତୁମ୍ଭ ଭାବେ ଗଡୁଥାଉ ଲୁହ ହସ ଆସୁ ତୁମରି ପରଶେ
ରୋମାଞ୍ଚିତ ହେଉ ମନ ପ୍ରାଣ ଭରି ଉଠି ତୁମରି ଆଶିଷେ ।



# ବହି

## (୨୩)

ବହି ସିନା ଏକ ଛୋଟିଆ ଶବଦ
କାମ ତା' ଅଟଇ ଅତି ମହାନ
କ୍ଷୁଦ୍ର କଳେବରେ ଧରି ରଖିଥାଏ
ଅସୁମାରି କେତେ ଜ୍ଞାନ ବିଜ୍ଞାନ । (୧)

ଧୋଇ ନେଇଯାଏ ମହାକାଳ ସ୍ରୋତ
ଯେତେ ଜୀବଜନ୍ତୁ ଯେତେ ପଦାର୍ଥ
ଛୁଇଁ ପାରେ ନାହିଁ ବହିର ଅସ୍ତିତ୍ୱ
ବିତରି ଥାଏ ସେ ଜ୍ଞାନ ଆଲୋକ । (୨)

ନିଃସଙ୍ଗ ଜୀବନେ ଉତ୍ତମ ସାଙ୍ଗ ସେ
ସବୁବେଳେ ଜଗି ବସି ରହିଛି
ନିରାଶ କରି ସେ କେବେ ଯାଏ ନାହିଁ
ଥରେ ଯିଏ ତାକୁ ଭଲ ପାଇଛି । (୩)

ଅନ୍ତରେ ତାହାର କେତେ ଗୂଢ଼ ତତ୍ତ୍ୱ
ନବ ଯୁଗ ପାଇଁ ସାଇତି ଥାଏ
ଯୁଗ ଆରମ୍ଭରେ ସୃଷ୍ଟିବୀଜ ସବୁ
ନୂତନ ପିଢ଼ିକୁ ପରଷି ଦିଏ । (୪)

ଗରଭେ ତାହାର ଭରି ରଖିଥାଏ
କେତେ ଛବି, ନାମ ଗୋଟିକି ଗୋଟି
ହାସ୍ୟ, କରୁଣ, ଶୃଙ୍ଗାର, ବୀର
ଆଦି ନବ ରସର ପରିପାଟୀ। (୫)

କଅଁଳ ଶିଶୁଟି ବହିଟିଏ ପାଇ
ନିର୍ମଳ ଆନନ୍ଦେ ହସି ଉଠଇ
ବାଘ, ଭାଲୁ, ହାତୀ, ହରିଣ ଛବିରେ
ପୁଲକେ ତା ପେଟ ପୂରି ଉଠଇ। (୬)

କିଶୋର କିଶୋରୀ ବହିଟିଏ ଧରି
ଖୋଲି ଦେଇଥାନ୍ତି ଗପର ପେଡ଼ି
ପରୀ ରାଇଜର କୁହୁକ କାହାଣୀ
ବିଜ୍ଞାନ ବିଚିତ୍ରା ଧାଡ଼ିକି ଧାଡ଼ି। (୭)

ଯୁବକ ଯୁବତୀ ପୃଷ୍ଠା ଓଲଟାନ୍ତି
ପ୍ରେମର ପରିଭାଷା ଖୋଜି ଖୋଜି
ମନ କଥା ଜାଣି କହିଦିଏ ବହି
ଅମର ପ୍ରେମର କୀରତି ରାଜି। (୮)

ବହିଟିଏ ଖୋଜେ ଅନୂଢ଼ା ଯୁବତୀ
ପରିଣୟର ଶୁଭ ଅବସରେ
ଅଭ୍ୟାସ କରଇ କାନ୍ଦଣା ଲହରୀ
ଓଡ଼ିଆ ସଂସ୍କୃତି ବଞ୍ଚାଇବାରେ। (୯)

ବହି ଖୋଜିଥାନ୍ତି ଗ୍ରାମବାସୀଗଣ
ଗାଁ 'ଭାଗବତଟୁଙ୍ଗୀ' କୁଟୀରେ
ଝରାଇ ଥାଏ ସେ ଭକ୍ତି ମନ୍ଦାକିନୀ
ପ୍ରତି ପ୍ରାଣ ପୁଣି ପ୍ରତି ଅନ୍ତରେ। (୧୦)

ବହି ଲୋଡ଼ା ହୁଏ ମରଣ ଶେଯରେ

ଚେତାଇ ଦେବାକୁ ସତ୍ୟର ପଥ

ନାମ ରତ୍ନ ବାଣୀ କର୍ଣ୍ଣପୁଟେ ଶୁଣି

ମୁମୁକ୍ଷୁ ଲଭଇ ମୁକ୍ତିର ପଥ । (୧୧)

ଯାଉଥିବେ ଲୋକେ ଆସୁଥିବେ ଲୋକେ

ବହି ରହିଥିବ କାଳ କାଳକୁ

ଉତ୍ତମ ବହିର ନଥାଏ ବିଲୟ

ବାଣ୍ଟୁ ଥାଏ ଜ୍ଞାନ ଯୁଗଯୁଗକୁ । (୧୨)



# ଆରାଧନା

(୨୪)

ଶରୀର ଅଟଇ ଦେବତା ମନ୍ଦିର
ମନ ତା'ର ପୂଜାରିଣୀ
ଆରାଧଇ ଦେବ ହୋଇ ଏକ ଭାବ
ହସ୍ତେ ପଞ୍ଚ ପୁଷ୍ପ ଘେନି । (୧)

ପଞ୍ଚ ପୁଷ୍ପ ତା'ର ପାଞ୍ଚଟି ଇନ୍ଦ୍ରିୟ
ଗୁନ୍ଥା ହୋଇଛନ୍ତି ମାଳେ
ଦର୍ଶନ ଶ୍ରବଣ ଗନ୍ଧ ସ୍ପର୍ଶ ପୁଣି
ରସନାଟି ଅବହେଳେ । (୨)

ମଣିଷ ଶରୀର ଅଟେ ମହାଧନ
ମୁକ୍ତିପଥ ଦ୍ୱାର ଏହି
ଆଶା କରିଥାନ୍ତି ଦେବଲୋକେ ଦେବେ
ମଣିଷ ଜନମ ପାଇଁ । (୩)

ଶରୀର ନଥିଲେ ସବୁ ଅକାରଣ
ବୃଥା ହୁଏ ଏ ଜୀବନ
ଶରୀରଟି ମୂଳ ସାଧନ ସମ୍ବଳ
ଜାଣି ହୁଅ ଯତ୍ନବାନ । (୪)

ଶରୀର ସୁରକ୍ଷା ପାଇଁ ମହାମନା
ପତଞ୍ଜଳି ଋଷି ପରା
ଢାଳି ଦେଇଛନ୍ତି ସମାଜ ସମ୍ମୁଖେ
ଯୋଗାନୁଶାସନ ଧାରା । (୫)

ଯମ, ନିୟମ, ଆସନ, ପ୍ରାଣାୟାମ
ପ୍ରତ୍ୟାହାର ଆଶ୍ରା କରି
ଆଗକୁ ଆଗକୁ ଆଗେଇ ଚାଲିଲେ
ଅଷ୍ଟମାର୍ଗ ଅନୁସରି। (୬)

ପହଞ୍ଚିବୁ ଶେଷେ ଧ୍ୟାନ ଅବଶେଷେ
ପରମ ଆନନ୍ଦ ଧାମେ
ପିଇବୁ ଅମୃତ ହେବୁ ଜୀବନ୍ମୁକ୍ତ
ବଣା ନୁହଁ ଏଣେତେଣେ। (୭)

ଶରୀର ସମ୍ପଦ ଦେଇଛନ୍ତି ପ୍ରଭୁ
ତାଙ୍କୁ ଖୋଜିବାର ପାଇଁ
ସଜ ଫୁଲ ପରି ହସୁଛନ୍ତି 'ସେହି'
ନିଭୃତ ଅନ୍ତରେ ଥାଇ। (୮)

ଏଇ ଦେହେ ଚାଲେ ଲୁଚକାଳି ଖେଳ
ସୃଷ୍ଟି, ସ୍ରଷ୍ଟା ବେନିଙ୍କର
ଯିଏ ପାଇଯିବ ବୋହୂକୁ ଶେଷରେ
ଜିତାପଟ ହେବ ତା'ର। (୯)

ଖେଳରେ ଜିତିବୁ ବୋହୂକୁ ଲଭିବୁ
ମନଦେଇ ଶୁଣ ମନ
ଗୁରୁଙ୍କ ନିର୍ଦ୍ଦେଶ ପାଳ ଅବିରତ
ମିଳିବ ପରମ ଧନ। (୧୦)

❒❒❒

# ଜୀବନ ଚିନ୍ତା

## (୨୫)

ମୋ ମନେ ଆସଇ ଜୀବନ ଅଟଇ
ଶବ୍ଦ ଏକ ଆପେକ୍ଷିକ
ଯା' ମନ ଯେସନ ତା'ସୁଖ ତେସନ
ନରନାରୀ ମନେରଖ। (୧)
ଅନ୍ଧ କେତେ ଜଣ କରିଥିଲେ ମନ
ହାତୀ ଦେଖିବାର ପାଇଁ
ଛୁଇଁଲେ ହାତୀର ଲାଞ୍ଜ କାନ ଗୋଡ଼
ଯେଝା ମନକୁ ମନାଇ। (୨)
ନିଜ ଅନୁଭବେ ମନ୍ତବ୍ୟ ବାଢ଼ିଲେ
ହାତୀର ସଜ୍ଞା ସ୍ୱରୂପ
କିଏ କହେ ହାତୀ କୁଲା ପରି ପୁଣି
କିଏ କହେ ଖମ୍ବ ଏକ। (୩)
ତେସନେ ଜୀବନ ସଜ୍ଞା ନିରୂପଣ
କରନ୍ତି ସଂସାରୀ ଜନ
କା' ପାଇଁ ଜୀବନ ସୁଖର ପସରା
କାହା ପାଇଁ ହୀନିମାନ। (୪)

ଯିଏ ଯେଉଁପରି ଭାବଇ ଜୀବନ

ଲାଗେ ତାକୁ ସେହିପରି

ଜିଁ ବାର କଳା ଆୟତ୍ତ କରିଲେ

ଦୁଃଖ ଯାଏ ଅପସରି। (୫)

ଦୁଃଖ ସୁଖ ଦୁହେଁ ଯମଜ ଭଗିନୀ

ହାତ ଧରାଧରି ହୋଇ

ମାନବ ଜୀବନେ ଆସିଥାନ୍ତି ଦୁହେଁ

କର୍ମଫଳ ସାଥେ ନେଇ। (୬)

ଏହି ଜଗତରେ ସ୍ଥିର ନୁହେଁ କିଛି

ପ୍ରକୃତି ନିଜେ ଚଞ୍ଚଳା

ବଦଳୁ ଥାଏ ସେ ଭିନ୍ନ ଭିନ୍ନ ରୂପେ

ନୀରଦେ ଯେହ୍ନେ ଚପଳା। (୭)

ଅଖ ବୁଲୁଥାଇ ଚକ ବୁଲୁଥାଇ

ବୁଲି ପଡୁଥାଇ ପହି

ସଂସାର ଭିତରେ ଘର କରିଥିଲେ

ପଥର ପଡ଼ିଲେ ସହି। (୮)

ବୁଲୁଥାଏ ଅଖ ବୁଲୁଥାଏ ଚକ

ସୁଖ ଦୁଃଖ ବୋଝ ଧରି

କର୍ମ ଅନୁସାରେ ଫଳ ମିଳିଥାଏ

ଫଳ ଦାତା ଦଇତାରି। (୯)

ଜୀବନ ନୁହଁଇ ମରୁ ମରୀଚିକା

ପଥିକ ନୁହଁ ନିରାଶ

କର୍ମ ପ୍ରେରଣାରେ ଭରା ଏ ଜୀବନ

ସ୍ନେହ ପ୍ରୀତି ତା ନିର୍ଯ୍ୟାସ।(୧୦)

ସଂସାର ଅଟଇ ବିଚିତ୍ର ବିଧାନ

ବିଚିତ୍ର କର୍ମୀଙ୍କ ଖେଳ

ଖେଳାଉ ଥାନ୍ତି ସେ ଜୀବ ଜଗତକୁ

ଧରି ରଜ୍ଜୁ ମହାକାଳ। (୧୧)

କାଳ କବଳରେ ପଡ଼ିବା ସଭିଏଁ

ବେଳୁ ହେବା ସାବଧାନ

ଶୁଭ କର୍ମ କରି ଅମର ହୋଇବା

ମିଳିବ ଅମର ଧାମ। (୧୨)

❒❒❒

# ଯେତିକି ଦେଖିଛି ଆଣ୍ଡାମାନ

(୨୬)

ଯାଇଥିଲି ଆଣ୍ଡାମାନ
ମୋ ପୁଅର ଥିଲା କର୍ମକ୍ଷେତ୍ର
ଇତିହାସେ ପଢ଼ିଥିଲି ଯାହା
ପ୍ରତ୍ୟକ୍ଷରେ ମଣିଲି ତା' ସତ।
ଚଉପାଶେ ସୁନୀଳ ସାଗର
ପ୍ରଲମ୍ବିତ ଦିଗନ୍ତ ବିସ୍ତାରୀ
ଥରେ ଦେଖିଦେଲେ ମନୁ
ଶୋଭା ତାର ନହୁଏ ପାଶୋରି।
ପ୍ରଥମେ ଦେଖିଲି ତାର
କମନୀୟ ବିମାନ ବନ୍ଦର
ଲେଖାଥିଲା ନାମ ଫଳକରେ
'ବୀର ସଭରକର'
ଅପହଞ୍ଚ'କଳାପାଣି' ବୋଲି
ଦିନେ ଯିଏ କଳ୍ପନାରେ ଥିଲା
ପ୍ରତ୍ୟକ୍ଷ ଭାବରେ ଆଜି
ଦର୍ଶନର ସୁଯୋଗ ମିଳିଲା।
ଆନନ୍ଦ ବିଷାଦ ଭାବ
ମନେ ମୋର ଜାଗି ଉଠିଥିଲା
କେତେ କଥା କେତେ ଗାଥା
ଚିତ୍ର ସମ ମନେ ପଡୁଥିଲା।
ଦେଖିଥିଲି 'ସେଲୁଲାର' ଜେଲ୍
ଥରି ଉଠିଥିଲା ଛାତି ମୋର
ଧରିଛି ଯେ କେତେ ବୀର ପ୍ରାଣ
ସ୍ମାରକୀ ସେ ଏ ମହା ଜାତିର।
ପ୍ରକୃତି ବାଢ଼ିଛି ସେଠି
ଅନୁପମ ଶୋଭାର ସମ୍ଭାର
ବାରେ ନିରେଖିଲେ ତାହା
ଲିଭେ ନାହିଁ ମନରୁ କାହାର।
ନିଘଞ୍ଚ ଅରଣ୍ୟ ମଧ୍ୟେ
ଠାବେ ଠାବେ ବ୍ରିଟିଶି ସ୍ମାରକୀ
ଅତୀତର ଅତ୍ୟାଚାର କଥା
କହୁଥାଏ ଦର୍ଶକଙ୍କୁ ଡାକି।
ଦେଖିଥିଲି ସେଇ 'ସ' ମିଲ୍
ଆମ ଦେଶ ଅରଣ୍ୟର ଶିରୀ
ଲୁଟିଥିଲା ବ୍ରିଟିଶ ଶାସକ
ନେଇଥିଲା କାଠ ଚିରିଚିରି।
ସେ କାଠରେ ହୋଇଛି ନିର୍ମିତ
ତାଙ୍କ ଦେଶ ରାଜାଙ୍କ ଉଆସ
ବିଦେଶୀ ଦେଖୁଛନ୍ତି ବୁଲି
ପ୍ରସିଦ୍ଧ ସେ 'ବକିଂହାମ୍' ପାଲେସ୍।

ଦେଖିଥିଲି 'ରସ୍' ଆଇଲାଣ୍ଡ
ଯେଉଁଠାରେ ସ୍ୱାଧୀନ ବିହାର
କରୁଥିଲେ ମହା ଆନନ୍ଦରେ
ଅଗଣିତ ହରିଣ ମୟୂର।
ସାଥେ ଥିଲେ ଗୁରୁଦେବ
ପାଉଥିଲେ ଅପାର ଆନନ୍ଦ
ପ୍ରକୃତି କୋଳରେ ଦେଖି
ନିଷ୍କପଟ ପ୍ରକୃତି ସମ୍ପଦ।
ଆଦରେ ପାଖକୁ ଡାକି
ଆଉଁଷିଲେ ଦିବ୍ୟ ସ୍ପର୍ଶ ଦେଇ
ପଶୁ ଜନ୍ମ ହେଲାକି ସଫଳ
ଦିବ୍ୟ ହସ୍ତୁ ଦିବ୍ୟ ସ୍ପର୍ଶ ପାଇ।
ସାଗରର ବକ୍ଷ ଚିରି
ଚାଲି ଥିଲା ବାଷ୍ପୀୟ ଯାନଟି
ତରଙ୍ଗ ସତେକି ଅବା
କାନ୍ଦୁଥିଲା ମଥା ପିଟି ପିଟି।
ଦୂର ପାହାଡ଼ ଉହାଡ଼େ
ସନ୍ଧ୍ୟା ଯେବେ ଆସୁଥିଲା ନଇଁ
ନାନା ଜାତି ଆଲୋକ ଉତ୍ସବେ
ହସୁଥିଲା ସିନ୍ଧୁ ତୀର ଭୂଇଁ।
'ମରିନା ପାର୍କ' ନାମରେ
ପ୍ରଖ୍ୟାତ ସେ ସାଗରର ବେଳା
ସନ୍ଧ୍ୟା ଆଗମନେ ସେଠି
ଲାଗିଥିଲା ଲୋକଙ୍କର ମେଳା।
ରାସ୍ତାଘାଟ ଧୂଳି ବାଲି ଶୂନ୍ୟ
ପରିବେଶ ଅତି ମନୋରମ
ମିଳୁଥିଲା ସମସ୍ତ ଦରବ
ଚଢ଼ା ଥିଲା କିନ୍ତୁ ଦରଦାମ୍।
ଦେଖିଛି ସଂଗ୍ରହାଳୟ
ସାମୁଦ୍ରିକ ସମ୍ପଦ ସମ୍ଭାର
ସାଇତି ରଖିଛି କୋଳେ
କେତେ ଜାତି ଜୀବ ମାନଙ୍କର।
ଦୁଇ କଡ଼େ ନିଘଞ୍ଚ ଜଙ୍ଗଲ
ଆଣୁଥିଲା ସୁଡ଼ଙ୍ଗର ଭ୍ରମ
ପାରି ହୋଇ ଯାଇଥିଲି ଯେବେ
(ଚିଡ଼ିଆ ଟାପୁ) ଦେଖିବାକୁ ସୂର୍ଯ୍ୟାସ୍ତ ରକ୍ତିମ।
ଅନେକ ଶୋଭା ସମ୍ପଦ
ଆଣ୍ଡାମାନ ରଖିଛି ସାଇତି
ମନେହୁଏ ଭାରତ ମାତାର
ରମ୍ୟ ଲୀଳା ସ୍ଥଳୀ ପାଲଟିଛି।
ବଦଳିଛି 'କଳାପାଣି'
ନ ଆଣେ ସେ ପରାଣେ ଆତଙ୍କ
ପାଲଟିଛି ପର୍ଯ୍ୟଟନ କ୍ଷେତ୍ର
ଆକର୍ଷଣ କରେ ପର୍ଯ୍ୟଟକ।
ମନେ ମୋ ରହିଛି ତା ଚିତ୍ର
ପ୍ରିୟତମ ସ୍ୱପ୍ନ ସମ ହୋଇ
କେବେ ଯଦି ମିଳନ୍ତା ସୁଯୋଗ
ତା' ପାଖକୁ ଯାଆନ୍ତି ମୁଁ ଧାଇଁ।

❐❐❐

# ବନ୍ଧୁତା

(On the occasion of friendshipday)

(୨୭)

ବିଜ୍ଞାନ ସମ୍ପଦ ବିଛାଡ଼ି ପଡ଼ିଛି ସାରା ବିଶ୍ୱର କୋଣେ ଅନୁକୋଣେ
ବନ୍ଧୁତାର ଛବି ଫୁଟି ଉଠୁଅଛି ଫେସ୍‌ବୁକ୍, ହ୍ୱାଟସ୍‌ଆପ୍ ଦର୍ପଣେ।
ପରଖିବା ପାଇଁ ବନ୍ଧୁତାର ନିଷ୍ଠା ବିଷ୍ଣୁ ଶର୍ମା ଚାଣକ୍ୟ ମହାଜ୍ଞାନୀ
ବାଢ଼ି ଦେଇଛନ୍ତି ସମାଜ ସମ୍ମୁଖେ ନୀତି ଶ୍ଳୋକ ନୀତିବାକ୍ୟର ଖଣି।
ସଙ୍ଗେ ଯାଇଥାଏ ଅନ୍ତରଙ୍ଗ ବନ୍ଧୁ ରାଜ ଦରବାରେ ଅବା ଶ୍ମଶାନେ
ନଛାଡ଼େ ସେ କେବେ ବନ୍ଧୁଙ୍କର ହାତ ଧନ ଦଉଲତର ପ୍ରଲୋଭନେ।
ବନ୍ଧୁ ହୋଇଥିଲେ ପରମ ପୁରୁଷ ଦୀନବନ୍ଧୁ ପ୍ରଭୁ ଦ୍ୱାରିକାଧୀଶ
ଦୂତ ପଣେ ଯାଇ ଗ୍ରାମ ପାଞ୍ଚ ଖଣ୍ଡ ମାଗି ଥିଲେ କୁରୁ ନନ୍ଦନ ପାଶ।
ବନ୍ଧୁ ହୋଇଥିଲେ ଜଗତର ନାଥ ଯାଜପୁରୀ ବନ୍ଧୁ ମହାନ୍ତି ପାଇଁ
ମାନ ରଖିଥିଲେ ବନ୍ଧୁ ମହାନ୍ତିର ଭୋଗଥାଳି ତାକୁ ପରଷି ଦେଇ।
ବନ୍ଧୁ ହୋଇଥିଲେ ଗୋପବନ୍ଧୁ ଦାଶ ଉତ୍କଳବାସୀଙ୍କ ହୃଦୟ ପୁରେ
ତୁଚ୍ଛ ମଣିଥିଲେ ପୁତ୍ରର ଜୀବନ ଛିଡ଼ା ହୋଇଥିଲେ ଦୁଃଖୀ ଦୁଆରେ।
ପଢ଼ିଥିଲି ଗପ ପିଲାବେଳେ ଏକ 'ଅପୂର୍ବ ବନ୍ଧୁତା' ଅମର ଗାଥା
ବନ୍ଧୁ ପାଇଁ ବନ୍ଧୁ ଆସିଥିଲା ଧାଇଁ ଫାଶୀ ଖୁଣ୍ଟେ ଝୁଲାଇବାକୁ ମଥା।
ବନ୍ଧୁତା ଅଟଇ ସ୍ୱର୍ଗୀୟ ସମ୍ପଦ ଅଧିକାରୀ ହେବା ଅତି କଠିନ
ଆତ୍ମ ନିରୀକ୍ଷଣ ଲୋଡ଼ା ତାହାପାଇଁ ସ୍ୱାର୍ଥ ବିସର୍ଜନ ପ୍ରଥମ କାମ।
ବନ୍ଧୁ ପାଇଁ ଯଦି ନ କାନ୍ଦିବ ପ୍ରାଣ ବନ୍ଧୁ ଦୁଃଖେ ଦୁଃଖୀ ନ ହେବା ଯେବେ
କିପରି ହୋଇବା ବନ୍ଧୁ ପଣେ ଗଣା ବନ୍ଧୁ ବୋଲି କିଏ କହିବ ତେବେ।

ବନ୍ଧୁତା ରଖିବା କାଠିକର ପାଠ ବନ୍ଧୁଦ୍ରୋହୀ ହେବା ଅତି ସହଜ
ବନ୍ଧୁଦ୍ରୋହୀ ହୋଇଥିଲେ ରାଜପୁତ୍ର କାଳୀଦାସଙ୍କର କାହାଣୀ ହେଜ।
ଘୋର ଜଙ୍ଗଲରେ ବ୍ୟାଘ୍ର ଭୟ ହେତୁ ବୃକ୍ଷରେ ଚଢ଼ିଲେ ରାଜ ନନ୍ଦନ
ଉପରେ ଅନାଇ ଦେଖିଲେ ଭଲ୍ଲୁକ ଥରିଗଲା ଛାତି ଶୁଖିଲା ପ୍ରାଣ।
ଆଦରେ ଭଲ୍ଲୁକ ଡାକିଲା କୁମର ଭୟ କର ନାହିଁ ଆସ ମୋ ପାଶ
ସମାନ ଅବସ୍ଥା ଚକ୍ରରେ ପଡ଼ିଛେ ବାନ୍ଧିବ ଆମକୁ ବନ୍ଧୁତା ଫାଶ।
ସର୍ତ୍ତ ରଖିଥିଲେ ଜଣ ପରେ ଜଣେ ରାତ୍ରି ଉଜାଗର ରହିବା ପାଇଁ
ପ୍ରଥମେ ଶୋଇଲେ ରାଜପୁତ୍ର ଭାଲୁ ଜଗି ରହିଥିଲା ତାଙ୍କରି ପାଇଁ।
ଦ୍ୱିତୀୟ ପାଳିରେ ଭାଲୁ ଶୋଇଥିଲା ଉଜାଗର ଥିଲେ ରାଜକୁମାର
ଭୁଲି ଚାଟୁ ବାକ୍ୟେ ଠେଲି ଦେଲେ ଭାଲୁ ବ୍ୟାଘ୍ର ମୁଖେ ହେବା ପାଇଁ ଆହାର।
ସହସା ଚମକି ଉଠିଲା ଭଲ୍ଲୁକ ନିରେଖିଲା ମିତ୍ରଦ୍ରୋହୀ କୁମାରେ
ଶଶେମିରା(ମିତ୍ରଦ୍ରୋହୀ)ଚାରି ଅକ୍ଷର ଲେଖିଲା ରାଜକୁମାରଙ୍କ ଜିହ୍ୱା ଅଗ୍ରରେ।
ପାଗଳ ପରାୟେ ବୁଲିଲେ କୁମାର ଶଶେମିରା, ଶଶେମିରା କହିଣ
ମହାକବି କାଳୀଦାସଙ୍କ ପ୍ରସାଦେ ମୁକ୍ତି ପାଇବାକୁ ହେଲେ ଭାଜନ।
ହୃଦୟ ସହିତ ହୃଦୟ ମିଶିଲେ ବନ୍ଧୁତାର ସୃଷ୍ଟି ହୁଏ ସମ୍ଭବ
ଥରେ ବାନ୍ଧି ହେଲେ ବନ୍ଧୁତା ଡୋରିରେ ଛିଣ୍ଡେ ନାହିଁ ଆଉ ସେ ବନ୍ଧୁ ଭାବ।

"କାହିଁ ବନ୍ଧୁତା କାହିଁ ପ୍ରେମ ସୁନ୍ଦର
ଯା'ର ପ୍ରାପତି ଯୋଗୁଁ ଦେବତା ନର"
ଆଜି ଶୁଭଦିନ ବନ୍ଧୁ ମିଳନେ
ଏହି ଆପ୍ତ ବାକ୍ୟ ରଖିବା ମନେ।



# କଳା ରଙ୍ଗର ମହତ୍ତ୍ୱ

(୨୮)

କଳା ଚାରି ଜାତି କହରେ ନାଗର      କଳା ଚାରି ଜାତି କହ
କଳା ଚାରି ଜାତି ନ କହି ପାରିଲେ      ମୋ ଘରେ ଚାକର ରହ ।
କାଉ କଳା ପୁଣି କୋଇଲି କଳା ଲୋ      କଳା ତ କଜ୍ଜଳପାତି
ଆହୁରି ଯଦି ତୁ କଳା ପଚାରୁଛୁ      କଳା ନୀଳାଚଳ ହାତୀ ।
କଳାର ମହତ୍ତ୍ୱ ଜାଣିନାହୁଁ କି ତୁ      ବୁଝାଇ କହୁଛି ଶୁଣ
ଉପର ନ ଦେଖି ଆହରଣ କର      କଳାରେ ନିହିତ ଗୁଣ ।
କଳା ମେଘ ଦେଖି ନାଚଇ ମୟୂର      କଳା କୃଷ୍ଣ କଳେବର
କଳା ଗାଈ କ୍ଷୀର ମିଠା ଲାଗେ ପୁଣି      ମିଠା କୋଇଲିର ସ୍ୱର ।
କଳା ମେଘ କୋଳେ ଚପଳା ସୁନ୍ଦର      ସୁନ୍ଦର ନୟନ ଡୋଳା
ଧଳା ହଳଦିଆ ପାଶେ ଥିଲେ ସୁଦ୍ଧା      ମନ ହରେ ଚକାଡୋଳା ।
ନ ହରେ ନୟନ ନ ମାନଇ ମନ      ଶିରେ ଦେଖି ପକ୍ୱ କେଶ
ଦିବସର କ୍ଲାନ୍ତି ହରି ନିଏ ରାତି      ଧରି ଅନ୍ଧକାର ବେଶ ।
ନୟନ ସୁନ୍ଦର ଦିଶଇ ଲାଗିଲେ      କଳା ଅଞ୍ଜନର ଗାର
ଘନ କୃଷ୍ଣ ବେଣୀ ମନ ନିଏ କିଣି      ମନ ଲୋଭା କିଶୋରୀର ।
କଳା ଟିକା ଟିଏ ଦେଇଥାଏ ମା'      ଶିଶୁ କପାଳରେ ମାରି
ସବୁ କୁଭାବନା କୁଦୃଷ୍ଟି କାଟଇ      ସୁରକ୍ଷା ହୁଏ ତାହାରି ।

ବେଳ ବୁଡ଼ିଗଲେ କଳା ଅନ୍ଧାରରେ ବସା ତେଜିଣ ବାଦୁଡ଼ି
ଆହାର ଖୋଜଇ ଡେଣା ଝାଡ଼ି ଝାଡ଼ି ଗଛରୁ ଗଛକୁ ଉଡ଼ି ।
ସାହାଯ୍ୟ କରଇ ଘନ କଳାରାତି ଚୋରର ଜୀବିକା ପାଇଁ
କଳା ପାଟ ଶାଢ଼ୀ ପିନ୍ଧି ଅବା ରାତି ଜଗତ ଦିଏ ଘୋଡ଼ାଇ ।
କଳା ରଙ୍ଗ ତଳେ ଏତେ ଗୁଣ ଥାଇ କହ କିମ୍ବା ତେବେ ଭାଇ
ହଟ ହଟା ହୁଏ ଶ୍ୟାମଳୀ କିଶୋରୀ ନବ ବଧୂ ବେଶ ପାଇଁ ।
କଳା ଝିଅଟିଏ ଜନମ ହୋଇଲେ ମନରେ ଆସେ ଆଶଙ୍କା
ସମସ୍ୟା ହେବ କି ବିବାହ ବୟସେ ମନେ ପଶିଯାଏ ଶଙ୍କା ।
ରଙ୍ଗ ରୂପ ଗୁଣ ବିଧାତା ଭିଆଣ ମାତୃ ଗର୍ଭେ ଗଢ଼ା ହୁଏ
ନିଜ ନିଜ କର୍ମ ଉତ୍ତମ ସଂସ୍କାରେ କାହାରି ହାତ ନଥାଏ ।
ଗୁଣ ସିନା କରେ ମଣିଷକୁ ବଡ଼ ରୂପ କରେ ନାହିଁ ବଡ଼
ଗୁଣକୁ ଚିହ୍ନିଲେ ଜୀବନ ସୁନ୍ଦର ରୂପ ମହାକାଳଫଳ ।



# ତନ୍ଦ୍ରା ଭଙ୍ଗ

(୨୯)

ଦୂର ଦିଗ୍‌ବଳୟେ ବସିଛି ଶାନ୍ତିର ହାଟ
ଡାକୁଛି ଗ୍ରାହକଗଣ ଆସ ଆସ ଝଅଟ ।
ହାଟ ଭାଙ୍ଗିବାକୁ ନାହିଁ ଆଉ ବେଶି ବେଳ
ଲମ୍ବା ପାହୁଣ୍ଡ ପକାଇ ଆସରେ ସଅଳ ।
ଆଶାୟୀ ସଉଦାଗର ସାଥେ କେହି ନାହିଁ
ଚାଲୁଥିଲା ମହାନନ୍ଦେ ଲକ୍ଷ୍ୟ ବସ୍ତୁ ପାଇଁ ।
ବାଟରେ ଦେଖିଲା ଏକ ସବୁଜ ପାହାଡ଼
ବିଶ୍ରାମ ନେଲା ସେ ସେଠି ରହି କିଛି କାଳ ।
ପରିତ୍ୟକ୍ତ ପାହାଡ଼ ସେ ମାଟି ଗୋଡ଼ିପୂର୍ଣ୍ଣ
ଶୁଭେ ନାହିଁ ପକ୍ଷୀ ରାବ ଝରଣାର ସ୍ୱନ ।
ଶୁଖିଛି ଝରଣାଟିର ଶାଶ୍ୱତ ନିର୍ଝର
ପଡ଼ିଛି କେବଳ କିଛି ଗୋଡ଼ି ଓ ପଥର ।
ସବୁଜ ବୃକ୍ଷଲତାରେ ନ ଶୋହେ କୁସୁମ
ପଥିକ ଶ୍ରମ ଲାଘବେ ସମ୍ପୂର୍ଣ୍ଣ ଅକ୍ଷମ ।
କଣ୍ଟକିତ ଶଯ୍ୟା ତା'ର ବିଶ୍ରାମ ପ୍ରଦାନେ
ପଥଶ୍ରାନ୍ତ ପଥିକଟି ଭାବେ ମନେ ମନେ ।
ନ ଥିଲେ ନ ଥାଉ କିଛି ମନୋରମ ଦୃଶ୍ୟ
ଛାଇ ତଳେ କିଛି କାଳ ବସିବି ଅବଶ୍ୟ ।

ବସୁ ବସୁ କଳ୍ପନାର ମୋହିନୀ ମାୟାରେ
ଛନ୍ଦି ହୋଇ ଯାଏ ମନ ଆଚ୍ଛନ୍ନ ତନ୍ଦ୍ରାରେ ।
ହାଟ ଭାଙ୍ଗିବାର ଶବ୍ଦ ଶୁଭେ ବହୁଦୂରେ
ତନ୍ଦ୍ରା ଭାଙ୍ଗିଯାଏ ଯାତ୍ରୀ ଉଠେ ଧୀରେ ଧୀରେ ।
କର୍ଣ୍ଣ କୁହରରେ କିଏ ସତେ କି କହୁଛି
ଆଗେଇ ଚାଲ ବାଟୋଇ ନ ପାଇବୁ କିଛି ।
ବେଗେ ବେଗେ ଧାଇଁ ଯାଅ ଲକ୍ଷ୍ୟ ବସ୍ତୁ ପାଇଁ
ରୁକ୍ଷ କର୍କଶ ପାହାଡ଼ ପଛରେ ପକାଇ ।
ବାଟୋଇ ବାପୁଡ଼ା କ୍ଷଣେ ହୋଇ ସଚେତନ
ନିରେଖି ନୀଳଚକ୍ରକୁ କରେ ନିବେଦନ ।
ଲଗାଇ ଭାବର ଡୋରି ଆହେ ଭାବଗ୍ରାହୀ
ଟାଣି ନିଅ ତବ ପାଶେ ବଳ ଆଉ ନାହିଁ ।



# ପ୍ରାର୍ଥନା

## (ଶ୍ରୀଗୁରୁଜୀଙ୍କ ପ୍ରୀତ୍ୟର୍ଥେ)

### (୩୦)

ମାତା ରାମୋ ମତ୍ ପିତା ରାମଚନ୍ଦ୍ରଃ
ସ୍ୱାମୀ ରାମୋ ମତ୍ ସଖା ରାମଚନ୍ଦ୍ରଃ
ସର୍ବସ୍ୱଂ ମେ ରାମଚନ୍ଦ୍ରୋ ଦୟାଳୁ
ର୍ନାନ୍ୟଂ ଜାନେ ନୈବଜାନେ ନଜାନେ ।

ଅର୍ଥ:- ରାମ ମୋର ମାତା, ରାମ ମୋର ପିତା, ରାମ ମୋର ପ୍ରଭୁ ଏବଂ ରାମ ହିଁ ମୋର ସଖା । ଦୟାମୟ କରୁଣାସାଗର ରାମଚନ୍ଦ୍ର ମୋର ସବୁ କିଛି; ତାଙ୍କ ବ୍ୟତୀତ ମୁଁ ଅନ୍ୟ କାହାକୁ ଜାଣେ ନାହିଁ ।

ମନୋଜବଂ ମାରୁତ ତୁଲ୍ୟ ବେଗଂ
ଜିତେନ୍ଦ୍ରିୟଂ ବୁଦ୍ଧିମତାଂ ବରିଷ୍ଠମ୍
ବାତାତ୍ମଜଂ ବାନରଯୂଥ ମୁଖ୍ୟଂ
ଶ୍ରୀରାମଦୂତଂ ଶରଣଂ ପ୍ରପଦ୍ୟେ ।

ଅର୍ଥ:- ଯାହାର ଗତି ମନର ଗତି ସହିତ ସମାନ, ବେଗ ବାୟୁର ବେଗ ସହିତ ସମାନ, ଯେ ଜିତେନ୍ଦ୍ରିୟ, ବୁଦ୍ଧିମାନଙ୍କ ମଧ୍ୟରେ ସର୍ବୋତ୍ତମ, ସେହି ପବନକୁମାର, ବାନର ଶ୍ରେଷ୍ଠ ଶ୍ରୀରାମ ଦୂତଙ୍କଠାରେ ମୁଁ ଶରଣ ଯାଉଛି ।

ଜୟ ସଙ୍କଟମୋଚନ ଜୟ ହନୁମାନ
ଜୟହେ ମଙ୍ଗଳମୟ ମରୁତ ନନ୍ଦନ ।
ଜୟ ଅମିତ ବିକ୍ରମ ଜ୍ଞାନଗୁଣ ସିନ୍ଧୂ
ଜୟ ରାମଦୂତ ଜୟ ଦୀନଜନ ବନ୍ଧୁ ।

ଜୟ ହନୁମାନ ଏକାଦଶ ରୁଦ୍ର ସମ
ହୃଦେ ତବ ବିରାଜିତ ସଦା ସୀତାରାମ ।
ଲଙ୍କାପୁରେ ଶଙ୍କା ଶୂନ୍ୟେ ବୁଲିଲ ଆପଣ
କୋଣେ ଅନୁକୋଣେ ଖୋଜି ସୀତା ବାସସ୍ଥାନ ।
ଲଙ୍କାପୁରେ ରାମନାମ ଉଚ୍ଚାରଣ ଶୁଣି
ମିତ୍ର ହେଲ ବିଭୀଷଣେ ରାମ ଭକ୍ତ ଜାଣି ।
ଉପବନେ ନିରେଖିଲ ଜ୍ୟୋତିର୍ମୟୀ ମୂର୍ତ୍ତି
ନୁହେଁ ସୂର୍ଯ୍ୟ ଚନ୍ଦ୍ର ଅବା ମାନବୀୟ କାନ୍ତି ।
ମନେ ମନେ ଜାଣିଲ ଏ ଜନକ ନନ୍ଦିନୀ
ମୁଦ୍ରିକା ଦେଖାଇ ପରିଚୟ ଦେଲ ପୁଣି ।
ଇନ୍ଦ୍ରଜିତ ବ୍ରହ୍ମଫାଶେ ବାନ୍ଧିଲା ତୁମକୁ
ବନ୍ଧନରେ ଥାଇ କହିଥିଲ ରାବଣକୁ ।
ସୀତା ଦେଇ ଆଶ୍ରାକର ଶ୍ରୀରାମ ଚରଣ
କିଙ୍କର ମୁହିଁ ତାଙ୍କର ସଦା ସ୍ମରେ ରାମ ।
ଅଗ୍ନିକୁ ଲଗାଇ ଦେଲା ପୁଚ୍ଛଦେଶେ ତୁମ
ବନ୍ଧନୁ ଫିଟି ଧାଇଁଲ ଡାକି ରାମ ରାମ ।
ପୁଚ୍ଛରୁ ଲାଗିଲା ଅଗ୍ନି ଦାନବଙ୍କ ଘର
ଭସ୍ମସାତ୍ ହୋଇଗଲା ସ୍ୱର୍ଣ୍ଣ ଲଙ୍କାପୁର ।
ତୁମ ମୁଖୁଁ ସବୁ କଥା ଶୁଣିଣ ଶ୍ରୀରାମ
କହିଲେ ତୋତେ ଡାକିଲେ ମିଳିବ ମୋ ଧାମ ।
ଦୂରସ୍ଥ ଗନ୍ଧମାର୍ଦ୍ଦନୁ ଆଣିଲେ ଔଷଧ
ଦୂର ହୋଇଯିବ ଲକ୍ଷ୍ମଣର ଶକ୍ତି ଭେଦ ।

॥ ୧୦୮ ॥

ଔଷଧ ଚିହ୍ନି ନ ପାରି ବୀର ହନୁମନ୍ତ
ଉପାଡ଼ି ଧରି ଆସିଲ ସେହି ପରବତ ।
ଔଷଧର ବ୍ୟବହାରେ ଉଠିଲେ ଲକ୍ଷ୍ମଣ
ତୁମ୍ଭଙ୍କୁ ପ୍ରଶଂସି ସର୍ବେ ଘେନିଲେ ବିଶ୍ରାମ ।
ଅଯୋଧ୍ୟା ଫେରିଲା ବେଳେ ଶ୍ରୀରାମ ନିର୍ଦ୍ଦେଶେ
ବିପ୍ରବେଶେ ଯାଇଥିଲ ଭରତଙ୍କ ପାଶେ ।
ବିଡ଼ିଣ ଭରତ ମନ ଜଣାଇ ଶ୍ରୀରାମ
ସ୍ୱାଗତ ପାଇଁ ଭରତ କରେ ଆୟୋଜନ ।
ଅଯୋଧ୍ୟା ପ୍ରବେଶ କଲେ ରାଜୀବ ଲୋଚନ
ଆନନ୍ଦରେ ପୁରବାସୀ ବୋଲେ ରାମ ରାମ ।
ତୁମ୍ଭ ପଦେ କରଯୋଡ଼ି କରୁ ନିବେଦନ
ସଦା ପ୍ରଫୁଲ୍ଲିତ ରହୁ 'ଗୁରୁଜୀ'ଙ୍କ ମନ ।
ଅମାପ ବିକ୍ରମ ଦିଅ ତାଙ୍କ ଶରୀରରେ
ଶତାୟୁ ହୁଅନ୍ତୁ ଗୁରୁ ଏହି ଶରୀରରେ ।
ତାଙ୍କ ପଦ୍ମପାଦେ ସଦା ଆମ୍ଭ ଚିତ୍ତ ରହୁ
ଏହାହିଁ ଭିକ୍ଷା ଆମ୍ଭର ଆହେ ମହାବାହୁ ।



# ଚେତନା, ମୋ ଝିଅ

(୩୧)

ନିର୍ମଳ ଚନ୍ଦ୍ର ମଣ୍ଡଳ ଶାରଦୀୟ ଶୋଭା
ଧରା ପୃଷ୍ଠେ ବିଛୁରିତ ପୂର୍ଣ୍ଣିମାର ଆଭା ।
କୁମାର ପୂର୍ଣ୍ଣିମା ତିଥି ମହାଲକ୍ଷ୍ମୀ ମାତା
ପୂଜା ପାଉଥିଲେ ମହୀ ଥିଲା ଉଲ୍ଲସିତା ।
ବହୁ ପ୍ରତୀକ୍ଷାର ଅନ୍ତ ହୋଇଲା ସେଦିନ
କୋଳ ମୋ ମଣ୍ଡନ କରିଥିଲା କନ୍ୟା ଧନ ।
ଅପୂର୍ବ ମମତା ସ୍ୱାଦ ଖେଳିଲା ଅନ୍ତରେ
ପହିଲି ଫୁଲ ଧରିଲେ ଯେପରି ଲତାରେ ।
ଚୈତନ୍ୟରୂପିଣୀ ବୋଲି 'ଚେତନା' ତା' ନାମ
ବାପା କହୁଥିଲେ ସର୍ବ ଗୁଣେ ଅନୁପମ ।
ବାସ୍ତବରେ ଝିଅ ଥିଲା ଆହ୍ଲାଦ ଦାୟିନୀ
ଯିଏ ଦେଖେ ଦଣ୍ଡେ ରହେ ତା'ର କଥା ଶୁଣି ।
କିଏ କହେ ଶିଳା ରୂପ ପ୍ରତିମା ପରାୟେ
ନେତ୍ର ଫେରେ ନାହିଁ ମୁଖୁ ସୁଧା ଝରୁଥାଏ ।
ଅତି ଟକେଟିଭ୍ ସିଏ ଜିଜ୍ଞାସୁ ତା' ମନ
ବାପାଙ୍କୁ ପଚାରି ପ୍ରଶ୍ନ କରଇ ଉଛନ୍ନ ।
ପ୍ରଥମ ଛେଳିର ମା' କେଉଁଠୁ ଆସିଲା
ଯାହାଠାରୁ ଛେଳି ବଂଶ ବିସ୍ତାର ହୋଇଲା ।
କହି କହି ଥକି ଯାଇ କହନ୍ତି ତା' ବାପା
ମୁଣ୍ଡ ଖରାପ କଲାଣି ଧନ୍ୟ ତା ଜିଜ୍ଞାସା ।

କବି ଗୁରୁ ଟାଗୋରଙ୍କ 'କାବୁଲିବାଲା'ର
ମିନି ଚରିତ୍ରରେ ସାମ୍ୟ ଅଛି ମୋ ଝିଅର ।
ଦୟା କ୍ଷମା ବିଚାରରେ ଅତି ସୁନିପୁଣା
ଦେଖେ ନାହିଁ ନିଜ ସ୍ୱାର୍ଥ କେବେ ହେଲେ ଜମା ।
ସାଙ୍ଗସାଥୀ ଛାତ୍ରଛାତ୍ରୀ ଶିକ୍ଷକ ମହଲେ
ଆଦର ସେ ପାଇଥାଏ ସ୍ୱତନ୍ତ୍ର ଭାବରେ ।
ମୋ ଜୀବନ ମରୁଭୂମେ ମରୁଦ୍ୟାନ ସେହି
ତା' ବିନା ମୋ ଜୀବନର କିଛି ମାନେ ନାହିଁ ।
ଝିଅ ନୁହେଁ ଖାଲି ମୋର ପରମ ବାନ୍ଧବୀ
ମୋ ଜୀବନ ଦୁଃଖ ସୁଖ ଗନ୍ତାଘର ଚାବି ।
ସହିପାରେ ନାହିଁ ଦୁଃଖ ଜୀବଜନ୍ତୁଙ୍କର
ଉଦ୍ଭିଦ ଜଗତ ଲାଗି କାନ୍ଦେ ତା' ଅନ୍ତର ।
ତା'ର ଶୁଭ କର୍ମଫଳେ ଅଧ୍ୟାପନା କାମ
ମିଳିଛି ପବିତ୍ର ପୀଠ ଶିକ୍ଷା ଅନୁଷ୍ଠାନ ।
କୁନିକୁନି ଶିଶୁ କଳିକାଙ୍କ ଗହଣରେ
ବିତିଯାଏ ଦିନ ତାର ଅତି ଆନନ୍ଦରେ ।
ସସ୍ନେହ ଶିକ୍ଷା ଦାନରେ ଜିଣିଛି ହୃଦୟ
ନ ଦେଖିଲେ ଶିଶୁଗଣ ହୁଅନ୍ତି ଅଥୟ ।
ସୁଖୀ ନୁହେଁ ସାଂସାରିକ ମୋହ ମାୟା ଛନ୍ଦେ
ଆଦରିଛି ଆଧ୍ୟାତ୍ମିକ ମାର୍ଗକୁ ନିର୍ଦ୍ୱନ୍ଦେ ।
ଗୁରୁକୃପା ବଳେ ତା'ର ମାର୍ଗ ସୁପ୍ରଶସ୍ତ
ହେବା ପାଇଁ ମୋ ଅନ୍ତର ଭାଳେ ଅବିରତ ।
ଜନ୍ମଦାତ୍ରୀ ଭାବେ ମୁହିଁ କରୁଛି ଦୟିନା
ଦିଅ ମା ଆଶିଷ ଢାଳି ହେ ବିଶ୍ୱ ଜନନୀ ।

□□□

# ବାବୁ

(୩୨)

ଶ୍ରୀପଞ୍ଚମୀ ଶୁଭ ଆଗମନେ
ଧରାପୃଷ୍ଠ ଶ୍ରୀବିମଣ୍ଡିତ
ଭୀଷ୍ମାଷ୍ଟମୀ ଥିଲା ସେହିଦିନ
ମାତୃ ଗର୍ଭୁ ହେଲା ସେ ସମ୍ଭୂତ ।
ଲୋଡ଼ି ନାହିଁ କାହାରି ସାହାଯ୍ୟ
ଡାକ୍ତର ବା ସେବିକାଗଣଙ୍କ
ମା' ତାର ନ ପାରିଲା ଜାଣି
ଆସୁଅଛି ତା କଳା ମାଣିକ ।
ନିକାଞ୍ଚନ ସୀମାନ୍ତ ଅଞ୍ଚଳ
ଅତି କ୍ଷୁଦ୍ର ଏକ ଜନପଦ
ଏବେ ମଧ୍ୟ ହୃଦୟରେ ଅଙ୍କା
ସତେ ଅବା ସାଇତା ସମ୍ପଦ ।
'ବନ୍ଧବାହାଲ' ନାଁ ରେ ସେ ଖ୍ୟାତ
ଅଖ୍ୟାତ ସେ ଛୋଟିଆ ଗାଁଟି
ଏ ଜନ୍ମରେ ତାହାପାଇଁ ସିଏ
ପାଲଟିଛି ତା'ର ଜନ୍ମମାଟି ।

ସ୍ମୃତି ତାର ଉଙ୍କି ମାରି ଉଠେ
ରହି ରହି ତା ଅନ୍ତରେ ଏବେ
ଜଣାଏ ସେ ମା'କୁ ତାହାର
ଉଚ୍ଛ୍ୱସିତ ଗଭୀର ଆବେଗେ।
ବସିଥିଲା ପରୀକ୍ଷା କେନ୍ଦ୍ରରେ
ଲୋକସେବା ପରୀକ୍ଷାର ପାଇଁ
ବାଲ୍ୟ ସ୍ମୃତି ଲେଖିବା ସମୟେ
ଲୁହ ତା'ର ଆସିଲା ଜକେଇ।
ଧନ୍ୟ ସେହି ଜନ୍ମଭୂମି
ଧନ୍ୟ ସେହି ଜନ୍ମ ମାଟି ତା'ର
ନ ପାରିବ ଭୁଲି ତାକୁ
କେବେ ହେଲେ ଜୀବନେ ତାହାର।
ପିଲାବେଳେ ଯେବେ ଦେଖେ
ବାପା ତା'ର ଖୁଆଇବା ପାଇଁ
ତା'ର ବଡ଼ ଭଉଣୀକୁ
ନାନାବାୟା ଗୀତ ଗାଇ ଗାଇ।
ଅଳି କରେ ମୋ ପାଖରେ
'ମୋ ପାଇଁ ତୁ ଗୀତ ଗାଇଦିଏ'
'ନିଧନ ଶଂଖାଳି' ବୋଲି
ମୁଁ ଗାଇଲେ ନିଶ୍ଚିନ୍ତରେ ଶୁଏ।
କ୍ରମେ ବଡ଼ ହେଲା ସିଏ
ଅତିକ୍ରମି ଶିକ୍ଷା ଶ୍ରେଣୀ ସବୁ
ଉଚ୍ଚ ଶିକ୍ଷା ଲାଭ ପାଇଁ ଗଲା
ରାଜଧାନୀ ଦିଲ୍ଲୀ ନଗରୀକୁ।

ବିପର୍ଯ୍ୟୟ ଘଟିଲା ତା ଭାଗ୍ୟେ
ତା' ମଥାରୁ ହାତ ଗଲା ଖସି
ଅକାଳରେ ପିତାଙ୍କ ବିୟୋଗ
ସହିବାକୁ ହେଲା ଦୁଃଖ ରାଶି ।
ବର୍ତ୍ତମାନ ସେବାରତ ସିଏ
ସରକାରୀ ପୋଲିସ ସେବାରେ
ଦେଇପାରେ ନାହିଁ ବେଳ
ତା' ମାଆର ଅସୁସ୍ଥତା ବେଳେ ।
କିନ୍ତୁ ଭୁଲି ନାହିଁ ସିଏ
ସାଙ୍ଗସାଥୀ ଆତ୍ମୀୟସ୍ୱଜନ
ମନେ ମନେ ସ୍ମରଇ ସଭିଙ୍କୁ
ଭାବମୟ ଅତି ତା'ର ପ୍ରାଣ ।
କର୍ତ୍ତବ୍ୟରେ ସଦା ଥାଏ ରତ
ଲୋକ ପ୍ରିୟ ଜନ ସମାଜରେ
ପ୍ରଶାନ୍ତିରେ ଭରେ ମା' ମନ
ଶୁଣି ଦେଲେ ତା ପ୍ରଶଂସା ଥରେ ।
ନ ଦେଉ ସେ କିଛି ପଛେ ସେବା
ଶାନ୍ତିମୟ ହେଉ ତା ଜୀବନ
ମା'ର ଏ ଅମୃତ ଆଶିଷ
ମାତୃତ୍ୱ ତ ସଦା ସର୍ତ୍ତହୀନ ।



# ଶ୍ରୀ ପ୍ରବୀର ଚନ୍ଦ୍ର ମିଶ୍ରଙ୍କ ଉଦ୍ଦେଶ୍ୟେ

(୩୩)

ମିଶ୍ରବାବୁ ମିଶ୍ରବାବୁ ଶୁଣିଥିଲି ନାମ
ଜାଣି ନ ଥିଲି ଆପଣ ଏତେ ନିଷ୍ଠାବାନ ।
ଗୁରୁ ଭକ୍ତି ଆପଣଙ୍କ ଅଟେ ଅନୁପମ
ଚିତ୍ତେ ସଦା ବହିଥାନ୍ତି ଗୁରୁ ସେବା ଧର୍ମ ।
ଗୁଣଗ୍ରାହୀ ସ୍ୱଭାବରେ ଜିଣନ୍ତି ମନକୁ
ଉତ୍ସାହିତ କରୁଥାନ୍ତି ଗୁଣ ପୂଜନକୁ ।
ତେଜି ପୁତ୍ର କନ୍ୟା ମୋହ ଶ୍ରୀଗୁରୁ ଚରଣ
ଆଶ୍ରା କରି ରହିଛନ୍ତି ଶ୍ରୀଗୁରୁଙ୍କ ଧାମ ।
ଶ୍ରୀଗୁରୁଙ୍କ ଶ୍ରୀମୁଖରେ ହସ ନ ଦେଖିଲେ
ବ୍ୟଥା ପାଇଥାନ୍ତି ସଦା ଆପଣା ମନରେ ।
ସଂକଳ୍ପ ନିଅନ୍ତି ହେବ ଆଶ୍ରମ ପ୍ରାଙ୍ଗଣେ
ସୁନ୍ଦରାକାଣ୍ଡ ପାରଣା ପ୍ରତିମାସେ ଥରେ ।
ସମ୍ପର୍କରେ ଗୁରୁଭାଇ ଅଟନ୍ତି ଆପଣ
ମୋ ପରି ନଗଣ୍ୟଜନେ ଢାଳିଛନ୍ତି ସ୍ନେହ ।
ଉତ୍ସାହିତ କରୁଥାନ୍ତି ଗୀତ ଲେଖିବାକୁ
ଗୀତଗୁଚ୍ଛ ସମର୍ପିବେ ଶ୍ରୀଗୁରୁଦେବଙ୍କୁ ।
ଏଡ଼େ ଭାଗ୍ୟ ସତେ ମୋର ହୋଇବ ଉଦୟ
ଲେଖିବି ମୁଁ ଗୀତ ଗୁରୁ ହୋଇବେ ସଦୟ ।

ସମର୍ପିବି ତାଙ୍କ ପଦେ ତାଙ୍କରି ମହିମା
ଜଗତ ଜନଙ୍କ ହିତେ ହୋଇବ ପ୍ରେରଣା ।
ବନ୍ଦଇ ମୁଁ ଶ୍ରୀଗୁରୁଙ୍କ ପଙ୍କଜ ଚରଣ
ଶ୍ରୀରାମଙ୍କ ପ୍ରିୟ ଭକ୍ତ ବୀର ହନୁମାନ ।
ସଦା ବିରାଜ କରନ୍ତୁ ଆପଣଙ୍କ ହୃଦେ
ଏତିକି ପ୍ରାର୍ଥନା ତାଙ୍କ ଚରଣାରବିନ୍ଦେ ।



*(ଶ୍ରୀ ପ୍ରବୀର ଚନ୍ଦ୍ର ମିଶ୍ର ମୋର ଗୁରୁଭ୍ରାତା)*

# ଶାନ୍ତି

## (୩୪)

ଶାନ୍ତି ଖୋଜ ଶାନ୍ତି ଖୋଜ ଶାନ୍ତି ଖୋଜ ମନ
ଶାନ୍ତି ଏକ ଶବ୍ଦ ଛୋଟ ମୂଲ୍ୟ ତା ଅସୀମ ।
ଶାନ୍ତି ନାହିଁ ମଣି ମୁକ୍ତା ରତ୍ନ ଧାରଣରେ
ଶାନ୍ତି ନାହିଁ ଇନ୍ଦ୍ରିୟର କାମନା ପୂର୍ତ୍ତିରେ ।
ଶାନ୍ତି ନାହିଁ ନଭଶ୍ଚୁମ୍ବୀ ଅଟ୍ଟାଳିକା ବାସେ
ଶାନ୍ତି ନାହିଁ ଜଳ ସ୍ଥଳ ଗିରି ବା ଆକାଶେ ।
ଶାନ୍ତି ନାହିଁ ପୁତ୍ର କନ୍ୟା ପ୍ରିୟଜନ ସାଥେ
ଶାନ୍ତି ନାହିଁ ଚନ୍ଦ୍ରାଲୋକେ ଗଭୀର ନିଶୀଥେ ।
ଶାନ୍ତି ନାହିଁ ନଦୀ ତଟେ ସାଗର ବେଳାରେ
ଶାନ୍ତି ନାହିଁ ମୁକ୍ତାକାଶ ଖୋଲା ପଡ଼ିଆରେ ।
ଶାନ୍ତି ନାହିଁ ରଙ୍ଗମଞ୍ଚ ରଙ୍ଗ ଭୂମିକାରେ
ଶାନ୍ତି ନାହିଁ ସଂସାରର ମାୟା ଖେଳ ଘରେ ।
ଶାନ୍ତି ନାହିଁ ମୁକୁଟ ମଣ୍ଡିତ ରାଜଶିରେ
ଶାନ୍ତି ନାହିଁ ମୁନୀ ମନ ଲୋଭା ବିଜନରେ ।
ଶାନ୍ତି ନାହିଁ ପ୍ରକୃତିର ମୋହିନୀ ରୂପରେ
ଶାନ୍ତି ନାହିଁ ମାୟାଧର ମାୟା ଅଞ୍ଜନରେ ।
ଶାନ୍ତି ନାହିଁ ବୀରଭୂମି ଯୁଦ୍ଧ ପଡ଼ିଆରେ
ଶାନ୍ତି ନାହିଁ ପ୍ରଣୟିନୀ ପ୍ରଣୟ ଫାଶରେ ।

ଶାନ୍ତି ନାହିଁ ନାନା ଜାତି ସ୍ୱାଦିଷ୍ଟ ବ୍ୟଞ୍ଜନେ
ଶାନ୍ତି ନାହିଁ ପ୍ରାଣ ପ୍ରିୟା ସୁନୀଳ ନୟନେ ।
ଶାନ୍ତି ପାଇବାକୁ ଯଦି ଅଭିଳାଷ ତୋର
ଆଶ୍ରା କର ଶ୍ରୀଗୁରୁଙ୍କ ପଙ୍କଜ ପୟର ।
କାମନା ବାସନା ଢାଳିଦିଅ ସେହିଠାରେ
ଅନନ୍ତ ଆଶିଷଧାର ସଦା ଯହିଁ ଝରେ ।
ତାଙ୍କ କୃପା ଆଶ୍ରା କରି ଆଗକୁ ଆଗକୁ
ଅତିକ୍ରମ କର ମନ ସଂସାର ବଣକୁ ।
ପାଇବୁ ଶେଷରେ ଖୋଜି ଶାନ୍ତିର ଆସ୍ୱଦ
ପୂରିବ ତୋ ମନୋରଥ ଚିତ୍ତ ହେବ ଶାନ୍ତ ।
ଚିତ୍ତ ଶାନ୍ତ ହେଲେ ତୋତେ ମିଳିବ ପ୍ରଶାନ୍ତି
ସେହି ତ 'ପରମାନନ୍ଦ' ସେହି ତୋର ଶାନ୍ତି ।



# ପ୍ରଜାପତି ପାଇଲା ଉତ୍ତର

## (ଶିଶୁ କବିତା)

### (୩୫)

ପଚାରିଲା ପ୍ରଜାପତି ଫୁଲଗଛଟିକୁ
ଆଜି କିମ୍ପା ଦେଇ ନାହୁଁ ଫୁଲ ଫୁଟିବାକୁ ।
ଅଭିମାନେ ଫୁଲଗଛ କହିଲା ତାହାକୁ
ମୋ ପାଦପାଖେ ଦେଖୁନୁ ସେ ଘାସ ଗଛକୁ ।
ପାଏ ମୁହିଁ ମାଳିକର ସେବା ଯତ୍ନ କେତେ
ସାର, ପାଣି ଦେଇ ସ୍ନେହେ ବଢ଼ାଇଛି ମୋତେ ।
ହେଲେ ମୋ ଚେହେରା ନ୍ୟୁନ ଘାସଗଛ ପାଖେ
କିପରି ଫୁଟିବ କହ ଫୁଲ ମୋର ବୁକେ ।
ବିନା ସେବା ଯତ୍ନେ କେତେ ଛନ ଛନ ହୋଇ
ସଜ ହୋଇଛନ୍ତି ଫୁଲ ଫୁଟାଇବା ପାଇଁ ।
ଇଚ୍ଛା ହୁଏ ଛିଣ୍ଡାଇବି ତା ଫୁଲ କଢ଼ିକୁ
ଦଳିମଳି ଫିଙ୍ଗି ଦେବି ବହୁତ ଦୂରକୁ ।
ସଞ୍ଜ ହେଲା ପ୍ରଜାପତି ଘରକୁ ଫେରିଲା
ମନେ ମନେ ଫୁଲଗଛ କଥା ଭାବି ହେଲା ।
ଘାସ ଗଛ କିଛି କ୍ଷତି କରିନାହିଁ ତାର
କାହିଁକି ଫୁଲଗଛର ରାଗ ତା ଉପର ।

ଆବିଷ୍କାର କଲା 'ଈର୍ଷା' ତାହାର କାରଣ
ସହି ନ ପାରି ଜଳୁଛି ଫୁଲଗଛ ପ୍ରାଣ ।
ଆନନ୍ଦରେ ଶୋଇଗଲା ଉତ୍ତର ପାଇଲା
ସକାଳ ସୂରୁଜ ତେଜେ ନିଦ ତା ଭାଙ୍ଗିଲା ।
ହାତଯୋଡ଼ି ଜଣାଇଲା ହେ ପରମେଶ୍ୱର
ସକଳ ପ୍ରାଣୀଙ୍କ ମନୁ ଈର୍ଷା ଦୂରକର ।



# ମା

(୩୬)

ଅସାଧ୍ୟ ସାଧନ ହୋଇଥାଏ ପରା ମାତୃ ଆଶିଷ ବଳେ
ଜାଣିଥିଲେ ଏହା କୁରୁକୁଳପତି ଦୁର୍ଯ୍ୟୋଧନ ଅବହେଳେ ।
ଢାଳିଥାନ୍ତେ ଯଦି ଜନନୀ ଗାନ୍ଧାରୀ ଆଶିଷର ବାରି ଧାରା
ଶୋହିଥାନ୍ତା ଶିରେ ବିଜୟ ଚନ୍ଦ୍ରିକା ଧରା ମଣିଥାନ୍ତେ ସରା ।
ଧନ୍ୟ ଜନନୀ ଧନ୍ୟ ଗାନ୍ଧାରୀ ଯଶ ତବ ମହୀ ତଳେ
ଚିର ଭାସ୍ୱର ରହୁ ଏ ସମାଜ ଘୋଷୁଥାଉ କାଳେ କାଳେ ।
ମା’ ବୋଲି ଯେଉଁ ଅମୃତ ଆସ୍ୱାଦ ଝରିପଡ଼େ ପ୍ରାଣେ ପ୍ରାଣେ
କିଏ ସେ ଶୁଝିବ ସତେ ତାର ଋଣ ଦେହ ବହି ଧରା ଧାମେ ।
ସୃଜନ କଳିକୁ ଉନ୍ମୋଚନ କରେ ବକ୍ଷରୁ ଅମୃତ ଦେଇ
ହୃଦୟ ଗୁହାରେ ବେଦନା ଚାପେ ସେ ମମତା ହସ ଫୁଟାଇ ।
ଯେଉଁ ହାତ ପୋଛେ କୁଢ଼ କୁଢ଼ ମଳ ମୂତ୍ର ନିଜ ସନ୍ତାନର
ମହାପୁଣ୍ୟ ମିଳେ ହୋଇଗଲେ ଥରେ ଆଶାବାଡ଼ି ସେ ହାତର ।
ଯେ ଆଖିରେ କେବେ ପଲକ ପଡ଼େନା ରୋଗ ଶଯ୍ୟା ପାଶେ ଥାଇ
କେତେ ଯେ ବିନିଦ୍ର ରଜନୀ ବିତଇ କଳନା କରି ନୁହଁଇ ।
ଯା ପଣନ୍ତକାନି ଅଭୟ ଆଶ୍ରୟ ଶିଶୁ ପାଇଁ ଆଜୀବନ
କରୁଣାମୟୀ ସେ, ମମତାମୟୀ ସେ ବିଶ୍ୱ ପାଇଁ ବରଦାନ ।
ମା ଆଖିରେ କେବେ ଶୁଖେ ନାହିଁ ଲୁହ ସନ୍ତାନର ଦୁଃଖ ଦେଖି
ଶେଷ ଜୀବନରେ ଅପଚରା ହେଲେ ସୁଖୀ ହୁଏ ଲୁହ ଚାଖି ।

ଅନ୍ତର ଯାହାର ସ୍ୱଚ୍ଛ ନିର୍ଝରିଣୀ ହୃଦୟ ଅତି ବିଶାଳ
ସର୍ବଂସହା ସେ ଧରିତ୍ରୀର ସମ ଶକ୍ତି ତାର କ୍ରିୟାଶୀଳ।
ଅଭିଯୋଗ କେବେ ବାଢ଼ି ସେ ଜାଣିନି ଦିଏ ନାହିଁ ଅଭିଶାପ
ଡାକେ ସଦା ପ୍ରଭୋ 'ମୋ ପିଲାମାନଙ୍କୁ ଘଣ୍ଟ ଘୋଡ଼ାଇଣ ରଖ'।
ମା' ହିଁ କେବଳ ପ୍ରଣମ୍ୟା ପ୍ରଥମେ ମା' ହିଁ ଗତି ମୁକତି
ମା' ରକ୍ଷୟିତ୍ରୀ ମା' ଶିକ୍ଷୟିତ୍ରୀ ହେଜ ଆହେ ମୂଢ଼ ମତି।



# ଅଭ୍ୟାସ

(୩୭)

ବିଚତ୍ର କର୍ମାଙ୍କ ବିଚିତ୍ର ବିଧାନ

ବୈଚିତ୍ର୍ୟପୂର୍ଣ୍ଣ ଏ ଧରା

ବଣ, ବିଲ, ଗିରି କାନନ ସବୁଠି

ମେଲା ଆନନ୍ଦ ପସରା।

ଆନନ୍ଦ ବାଣ୍ଟିବା ଉଦ୍ଦେଶ୍ୟ ତାଙ୍କର

ନିଜେ ସେ ପରମାନନ୍ଦ

ଡାକୁଛନ୍ତି ଆସ ମରୀଚିକା ଭୁଲି

ପିଅ ଦିବ୍ୟ ମକରନ୍ଦ।

ଉଭା ହୋଇଛନ୍ତି ଗୁରୁ ରୂପେ ନିଜେ

ବାଟ ଦେଖାଇବା ପାଇଁ

ଏ ମୂଢ଼ ମଣିଷ ବୁଝେ ନାହିଁ କିଛି

ମାୟା ଟାଣି ନେଉ ଥାଇ।

ବିଷୟରେ ଦୁଃଖ ମିଳେ ନାହିଁ ସୁଖ

ହଜାଏ ଜ୍ଞାନ ବିବେକ

ପୂର୍ବ କର୍ମ ଫଳେ ମିଳିଥାନ୍ତି ଗୁରୁ

ସ୍ମୃତି ପଥେ ଏହା ରଖ।

ଚମକି ଚାହିଁଲେ ଦେଖିବୁ ମନୁଆ

ଚଳଚ୍ଚିତ୍ର ଏ ଜଗତ

ଅମୃତ ବଚନ ସଦାକର ପାନ

ପଥ ହେବ ଆଲୋକିତ ।

ଅଭ୍ୟାସ ବଳରେ ଛୋଟ ଶିଶୁଟିଏ

କ୍ରମେ କହିଥାଏ କଥା

ଅଭ୍ୟାସରେ ମନ ହୋଇବ ଏକାଗ୍ର

କହେ ଭଗବଦ୍ ଗୀତା ।

ଅଭ୍ୟାସ ବଳରେ ଟିକି ଫୁଲଟିଏ

ହସଇ ପାଖୁଡ଼ା ମେଲି

ଅଭ୍ୟାସରେ ଶିଶୁ ଚାଲିବା ଶିଖଇ

ବାରମ୍ବାର ତଳେ ପଡ଼ି ।

ଅଭ୍ୟାସ ପ୍ରଥମେ ଲାଗିଥାଏ ପିତା

ଫଳ କିନ୍ତୁ ତା ମଧୁର

ଅଭ୍ୟାସର ମଧୁ ଚାଖି ଦେଲେ ଥରେ

ମନ କ୍ଲାନ୍ତି ହୁଏ ଦୂର ।

ବଣରେ ବିକଶି ବଣମଲ୍ଲୀଟିଏ

ସୁବାସ ବିତରିଥାଏ

ରୂପେ ଗୁଣେ ସରି ହୋଇଥିଲେ ସୁଦ୍ଧା

ଆଦର ପାଇ ନଥାଏ ।

ତଥାପି ଛାଡ଼େନି ଅଭ୍ୟାସ ତାହାର
ଲୁଚି ଲୁଚି ବନେ ଫୁଟେ
ବାଣ୍ଟି ଦେଉଥାଏ ଅପୂର୍ବ ମହକ
ମନ୍ଦ ଗନ୍ଧ ବହ ହାତେ।
ରାତିଏ ମାତର ଜୀବନ ତାହାର
ପ୍ରଭାତେ ପଡ଼ଇ ଝରି
ଶରତ ଆଗମେ ଅଭ୍ୟାସବଶତଃ
ଫୁଟଇ ଗଙ୍ଗଶିଉଳି।
ଅଭ୍ୟାସରେ ସିନା ଗୁରୁ କୃପା ମିଳେ
ଅଭାବରେ ମିଳେ ନାହିଁ
ଲାଗି ରହ ବାବୁ ଲାଗି ଲାଗି ଦିନେ
ରତ୍ନ ପାଇଯିବୁ ତୁହି।

□□□

# ପ୍ରିୟ ବନ୍ଧୁଙ୍କ ପ୍ରତି

## (୩୮)

ବ୍ୟାକୁଳିତ ଚିତ୍ତ ମୋର ଆକୁଳ ଅନ୍ତର
କାହିଁକି ଆସିଲି ଫେରି ତେଜି ତୁମ ଘର।
ମଧୁର ବଚନ ଦାନେ ତୋଷିଥାନ୍ତି ମନ
ଉଲ୍ଲସିତ ହୋଇଥାନ୍ତା ଦେହ ମନ ପ୍ରାଣ।
ଆଉଁଷି ମୁଁ ଦେଇଥାନ୍ତି ଦେହ ଗୋଡ଼ ହାତ
ଊଣା ହୋଇଥାନ୍ତା ପୀଡ଼ା ମନ ଥାନ୍ତା ତୃପ୍ତ।
ସମ୍ପର୍କର କିବା ମୂଲ୍ୟ କିବା ସ୍ନେହ ପ୍ରୀତି
ଅସମୟ ବେଳେ ଯଦି ନାହିଁ ଉପସ୍ଥିତି।
କାହିଁ ସେ ବନ୍ଧୁତା କାହିଁ ସେ ପ୍ରେମ ସୁନ୍ଦର
ଯାହାର ପ୍ରାପତି ଯୋଗୁ ଦେବ ହୁଏ ନର।
ଏ ସମାଜ କେତେ କ୍ରୁର କଠୋର ତା ନୀତି
ନିଷ୍ଠୁର ନିୟମ ଜାଳେ ଜଳେ ସ୍ନେହ ପ୍ରୀତି।
କାମ୍ୟ ନୁହେଁ ସଂସାରରେ ଏକାନ୍ତ ଜୀବନ
ଏକାନ୍ତ କାମନା ସିନା କରେ ଯୋଗୀ ଜନ।
ହାରିଗଲି ସମାଜର ନିଷିଦ୍ଧ ଅଞ୍ଚଳେ
ପୋଛି ପାରିଲିନି ଦୁଃଖ ମୋ ସ୍ନେହ ଅଞ୍ଚଳେ (ପଣତକାନି)।

କ୍ଷମାଗୁଣେ କ୍ଷମା ଦିଅ ପ୍ରିୟ ବନ୍ଧୁ ମୋର
ଦୂର ହେବ ସବୁ ପୀଡ଼ା ଦେହ ଓ ମନର।
ଉଜାଗର ରହି ଆଜି କରୁଛି ଜଣାଣ
ଶୁଣିବେ ନିଶ୍ଚୟ ପ୍ରଭୁ କାଳୀୟ ଗଞ୍ଜନ।
ତୁମ ବାର୍ତ୍ତା 'ସୁ ପ୍ରଭାତ' ସାଥେ ତୁମ ଶୁଭ
ସମାଚାର ବୋହି ଆଣୁ ଏତିକି ସୁଲଭ।

❑❑❑

*(ବନ୍ଧୁଙ୍କ ଅସୁସ୍ଥତା ସମୟରେ ଲିଖିତ)*

## ମରୁଯାତ୍ରୀ

(୩୯)

ସରି ସରି ଆସେ ଆଶାର ଯାମିନୀ ମରି ମରି ଯାଏ ଆଶା
ଆଲୋଡ଼ନ ଜାଗେ ନିଭୃତ ଅନ୍ତରେ ମେଣ୍ଟି ନାହିଁ ତ ପିପାସା ।
ସମୟ ସୀମିତ ଜୀବନ ସୀମିତ ପିପାସାର ନାହିଁ ସୀମା
ଏକ ପରେ ଏକ ସୃଷ୍ଟି ହୋଇକରେ ପଥିକକୁ ବାଟ ବଣା ।
ସଂସାର ପଥରେ ଚାଲଇ ପଥିକ ବାସନାର ବୋଝ ଧରି
କାହିଁକି ଆସିଛି କିସ ନେବ ପୁଣି ପକାଏ ହେଲେ ପାଶୋରି ।
ଏ ସଂସାର ଅଟେ ମରୁଭୂମି ସିନା ସୁଖ ମରୀଚିକା ସମ
ଆଗକୁ ଆଗକୁ ଟାଣି ନେଉଥାଏ କରୁଥାଏ ମତିଭ୍ରମ ।
ସୁଖ ବୋଲି ଯାହା ଜନ ନେତ୍ରେ ଦିଶେ ସେ ଅଟେ ବିଷମ ଫଳ
ଚାଖି ଦେଲେ ଥରେ ବୁଡିଯାଏ ମନ ନ ମିଳଇ ଥଳକୂଳ ।
ବେଳୁ ସାବଧାନ ହୁଅ ମରୁଯାତ୍ରୀ ଲକ୍ଷ୍ୟ ତୁମ 'ଓଏସିସ୍'
ମାୟା ମରୀଚିକା ବନ୍ଧନୁ ମୁକୁଳି ଭଜ ନୀଳଗିରିବାସୀ ।
ଭଜିଲେ ସେ ପଦ ମିଳିବ ସମ୍ପଦ ଭେଟ ହେବ ମୁକ୍ତି ପଥ
ଆନନ୍ଦେ ମଗନ ହୋଇଯିବ ମନ ଭଜ ତାଙ୍କୁ ଅବିରତ ।

❑❑❑

# ଅପରାହ୍ଣରେ ସୂର୍ଯ୍ୟୋଦୟ

(୪୦)

ସୃଷ୍ଟି ନୁହେଁ ସ୍ଥିତିଶୀଳ ଜମା
ଗତିଶୀଳ ଅଟେ ତାର ଧର୍ମ
ନିରବ ନିସ୍ପନ୍ଦ ସେ ଗତି
ଅନ୍ତରୀକ୍ଷେ ସବିତା ସମାନ ।
ଅସ୍ତଗାମୀ ଜୀବନ ସବିତା
ତେଜହୀନ ସ୍ତିମିତ ଗୋଧୂଳି
ଅଚାନକ ଚେଇଁ ଉଠି ଦେଖେ
ନୂଆ ରଙ୍ଗ ନୂତନ ବର୍ଣ୍ଣାଳି ।
ଉଦ୍‌ଭାସିତ ହୋଇଛି ଅନ୍ତର
ଅଙ୍କୁରିତ ନୂତନ ଆବେଗ
ବର୍ଣ୍ଣହୀନ ଅପରାହ୍ଣ ବୁକେ
ସମ୍ଭବିଛି ନବ ସୂର୍ଯ୍ୟୋଦୟ ।
ସୀମାହୀନ ଆଶା ତରଙ୍ଗିଣୀ
ବହି ଆଣେ ଅସଂଖ୍ୟ ତରଙ୍ଗ
ସ୍ୱପ୍ନ ରାଜ୍ୟେ ରଚନ୍ତି ସଉଧ
ହସ୍ତେ ଧରି ନାନାବିଧ ରଙ୍ଗ ।
ଅବସନ୍ନ କ୍ଳାନ୍ତ ଅପରାହ୍ଣେ
ଶତସିଂହ ତାରୁଣ୍ୟର ଶକ୍ତି
ନବଜନ୍ମ ଘଟିଛି ଜୀବନେ
ନୂଆ ଲାଗେ ଧୂସର ପ୍ରକୃତି ।
ଯେ ରଚିଛି ଅନ୍ଧାର ଆଲୁଅ
ସବିତା ତ ତାଙ୍କରି ହିଁ ତେଜ
ଦୂରୀଭୂତ କରି ଅନ୍ଧକାର
ବୁଣିଥାନ୍ତି ସୃଷ୍ଟିର ମୁରୁଜ ।
ବ୍ୟର୍ଥ କେବେ ନୁହେଁ ଅପରାହ୍ଣ
ସେ ସକଳ ଶକ୍ତିର ଆଧାର
ବୁଣିଦେବ ଯୁବଶକ୍ତି ମଧ୍ୟେ
ଅମୋଘ ସେ ସୃଷ୍ଟି ବୀଜସାର ।
ନବ ଅଭିସାରେ ଯୁବଶକ୍ତି
ଜାଗି ଉଠି ହେବ ଆଗଭର
ଗିରିଶିଖେ ଲକ୍ଷ୍ୟ ରଖି ଚାଲିବାକୁ
ହେବପୁଣି ଦୃଢ଼ପରିକର ।

□□□

# ପ୍ରତ୍ୟୁପକାର

## (ଶିଶୁମାନଙ୍କ ପାଇଁ)

### ଜାପାନୀ ଲୋକ କଥା ଆଧାରରେ ଲିଖିତ

(୪୧)

ଅତି ଶାନ୍ତ ସରଳ ସେ ସୁମାଇ ତା ନାମ
ଗୋରୁ ପଲ ଧରି ସାଥେ ବୁଲେ ବିଲବଣ ।
ମା ସାଥେ ଏକାକୀ ସେ କାଟୁଥିଲା ଦିନ
ନିତି ଚରାଏ ଗୋରୁଙ୍କୁ ହରଷିତ ମନ ।
ଅଚାନକ ଦିନେ ଏକ ଘଟଣା ଘଟିଲା
ଆହତ ବଗୁଲୀଟିଏ ତା'ପାଦେ ପଡ଼ିଲା ।
ଆଦରେ ଟେକି ବଗୁଲୀ ଦେଖିଲା ସୁମାଇ
ବାଜପକ୍ଷୀ ଆକ୍ରମଣେ ଛଟପଟ ହୋଇ ।
ନାଲି ଟହ ଟହ ରକ୍ତ ବିନ୍ଦୁ ଝରୁଅଛି
ଯନ୍ତ୍ରଣାରେ ବଗୁଲୀର ସର୍ବାଙ୍ଗ ଥରୁଛି ।
ଅତି ସ୍ନେହରେ ସୁମାଇ ତାକୁ ଆଉଁଷିଲା
ପାଣି ପାଖକୁ ନେଇ ତା' ପର ଧୋଇ ଦେଲା ।
ଆଞ୍ଜୁଳାରେ ପାଣି ନେଇ ତା' ପାଟିରେ ଦେଲା
ବଗୁଲୀ ମନରେ ଟିକେ ସାହସ ଆସିଲା ।
କିଛି କ୍ଷଣ ଅନ୍ତେ କିସ ଭାବିଲା ମନକୁ
ଫୁର୍‌କିନା ଉଡ଼ିଗଲା ନୀଳ ଆକାଶକୁ ।

କିଛିଦିନ ଅନ୍ତେ ଏକ ସୁନ୍ଦରୀ ତରୁଣୀ
ସୁମାଇର ଘରେ ଆସି ପହଞ୍ଚିଲା ପୁଣି।
ସୁମାଇକୁ ବିଭା ହେବା ପାଇଁ ଇଚ୍ଛା ତାର
ଗୁହାରି ଜଣାଇଲା ସେ ମା'ଙ୍କ ଆଗର।
ଖୁସି ହୋଇ ମା' ତାର ଦେଲେ ସନମତି
ଆନନ୍ଦେ ସୁମାଇ ସାଥେ କାଟେ ଦିନରାତି।
ସେବା ଯତ୍ନ କରୁଥାଏ ଜାଣି ମନକଥା
ସବୁରି ମୁହଁରେ ତାର ପ୍ରଶଂସା ବାରତା।
ଏ ସମୟେ ଦୁର୍ଯୋଗକୁ ମରୁଡ଼ି ପଡ଼ିଲା
ଅକାଳେ ସବୁ ଫସଲ ଉଜୁଡ଼ିଣଗଲା।
ଉପାୟ ନ ପାଇ ମା, ସ୍ତ୍ରୀଙ୍କୁ ସାଙ୍ଗରେ
ଧରି ସୁମାଇ ଚାଲିଲା ଟୋକିଓ ନଗରେ।
ପ୍ରକାଶିଲା ପତି ପାଶେ ମନ କଥା ପତ୍ନୀ
ମଲମଲ (ମସ୍‌ଲିନ୍) ବୁଣିବା କଳା ତାକୁ ଜଣାଅଛି।
ବୁଣିବ ସେ ମଲମଲ ବିକିଣ ବଜାରେ
ବିକ୍ରୀଲବ୍ଧ ପଇସାରେ ଚଳିବା ଖୁସିରେ।
ମାତ୍ର ଏକ ସର୍ତ୍ତ ରଖିଥିଲା ତାର ପତ୍ନୀ
ତିଆରି ବେଳରେ ଘରେ କେହି ନପଶନ୍ତି।
ବୁଣିଲା ମଲମଲ ଅତି ଧୋବ ଫରଫର
ତା ଉପରେ ନାଲିଛିଟା ଅତି ଚମତ୍କାର।
ପହିଲେ କିଣିଲେ ରାଜା ହୋଇ ଅତି ଖୁସି
ସୁନା ମୋହର ଦେଲେ ସୁମାଇକୁ ଡାକି।
ଦିନେ ସୁମାଇ ମନରେ ଆସିଲା ସନ୍ଦେହ
ନେଉ ନାହିଁ ତୁଳା ପୁଣି ନେଉ ନାହିଁ ରଙ୍ଗ।

କିପରି ବୁଣିଦେଉଛି ମଲମଲ ସେହି
ଦେଖିଲା କବାଟ ଫାଙ୍କେ ଲୁଚିକରି ରହି।
ଘର ଭିତରେ ଦେଖିଲା ପତ୍ନୀ ବଦଳରେ
ଧୋବଲା ବଗୁଲୀ ଏକ ତା ପତ୍ନୀ ଯାଗାରେ।
ନିଜ ପରରୁ କାଢୁଛି ଅତି ସୂକ୍ଷ୍ମ ପର
ପଞ୍ଜାରେ ବୁଣି ଦେଉଛି ମଲମଲ ସୁନ୍ଦର।
ତା ଦେହ କ୍ଷତରୁ ରକ୍ତ ଛିଡ଼ିକି ପଡୁଛି
ମଲମଲର ଶୋଭାକୁ ବଢ଼ାଇ ଦେଉଛି।
ବୁଝିଗଲା ସୁମାଇ ସେ ନୁହେଁ ପତ୍ନୀ ତାର
ସ୍ତ୍ରୀ ହୋଇ ବଗୁଲୀ ଶୁଝୁଛି ଉପକାର।
ଏ ସମୟେ ମା' ତାର 'ଡାକିଲା ସୁମାଇ
ଚମକି ବଗୁଲୀ ଉଡ଼ିଗଲା ଫାଙ୍କ ଦେଇ।
ଅନୁତାପେ ଦଗ୍ଧ ହେଲା ସୁମାଇ ଅନ୍ତର
ଭୁଲି ଯାଇଥିଲା ସେ ଯେ ସର୍ତ୍ତ ତା ପତ୍ନୀର।
ଅଳ୍ପଜୀବୀ ହେଲେ ସୁଦ୍ଧା ଉପକାର ମୂଲ୍ୟ
ଶୁଝୁଥିଲା ବଗୁଲୀଟି ବୁଣି ମଲମଲ।
ନ ଭୁଲିବା ଉପକାରୀ ଉପକାର କଥା
ସେବା ଦାନ ମହାପୁଣ୍ୟ ପାଳିବା ସର୍ବଥା।

❑❑❑

# ବରୁଣେଇ କୋଳେ

## (୪୨)

ଶୁଭ ଲଗ୍ନ ଆଜି ଲାଗେ ଅତି ଶୁଭ ବେଳ
ବରୁଣେଇ କୋଳେ ଦେଖି ସାଙ୍ଗସାଥୀ ମେଳ
ମନେ ନାହିଁ କା'ର ତ୍ରାସ
ପ୍ରାଣେ ଭରିଅଛି ଆଜି ଅପୂର୍ବ ଉଲ୍ଲାସ...................... ||୧||

ଜାଗିଥିଲା ମନେ ମୋର ବହୁଦିନୁ ଆଶ
ପଢ଼ିଥିଲି ଉତ୍କଳର ଜାତି ଇତିହାସ
ଏଇ ବରୁଣେଇ କୋଳ
ପାଇକ ପୁଅର ଥିଲା ସଂଗ୍ରାମର ବଳ....................... ||୨||

ମେଣ୍ଟି ନ ଥିଲା ମୋହର ଦର୍ଶନ ପିପାସା
ସଂସାର ଜଟିଳ ଜାଲେ ମରିଥିଲା ଆଶା
ଆଜି ପଡ଼ିଛି ସେ ଯୋଗ
ମନ ଥିଲେ କାଳେ ପ୍ରାପ୍ତ ହୁଅଇ ସୁଯୋଗ................. ||୩||

ସାନ ଭାଇ ଭଉଣୀଙ୍କ ଅପୂର୍ବ ମିଳନ
ଜୀବନରେ ଅଙ୍ଗେ ଲିଭା ଦୁଃଖ ସୁଖମାନ
ଶୁଣି ପୂରେ ମୋ ଅନ୍ତର
ମୋ ପାଇଁ ଅଟଇ ଏହା ମହା ଅବସର.................... ||୪||

ବିରାଟ ଏ ବିଶ୍ୱ ମଧ୍ୟେ ଅତି ନିଃସ୍ୱ ମୁହିଁ
ଦେବା ପାଇଁ ପ୍ରତିଦାନେ କିଛି ମୋର ନାହିଁ
ଖାଲି ଏତିକି ମାଗୁଣି
ସର୍ବ ଶୁଭେ ରହିଥାନ୍ତୁ ମୋ ଭାଇ ଭଉଣୀ.................... ।।୫।।



*('ଜୟହିନ୍ଦ' ଉଚ୍ଚ ବିଦ୍ୟାଳୟର ୧୯୬୯ ମାଟ୍ରିକ୍ୟୁଲେସନ ବ୍ୟାଚ୍‌ର 'ବନ୍ଧୁମିଳନ' ଅବସରରେ ଲିଖିତ)*

# ଅଭିନବ ଅନୁଭବ

(୪୩)

ପହିଲି ଗଲି ମୁଁ ପ୍ରିୟବନ୍ଧୁ ସାଥେ ପ୍ରମୋଦ ଉଦ୍ୟାନ ଦେଖି
ସୁଶୀତଳ ଛାୟା ବାଢ଼ିଥିଲେ ବୃକ୍ଷ ମନ ଯାଉଥିଲା ଲାଖି।
ଜାଗିଥିଲା ପ୍ରାଣେ ଅପୂର୍ବ ଉଲ୍ଲାସ ଭରିଥିଲା ମନେ ଶାନ୍ତି
ଦେଖିଲି ପ୍ରକୃତି ଅସଜଡ଼ା ରୂପ ତଥାପି ଥିଲା ପ୍ରଶାନ୍ତି।
ମଧ୍ୟାହ୍ନ, ମାର୍ତ୍ତଣ୍ଡ ଢ଼ାଳୁଥିଲା ତାର ଆଗ୍ନେୟ କିରଣ ଜାଳ
କର୍ମରତ ଥିଲେ କର୍ମଚାରୀଗଣ ବହୁଥିଲା ଶ୍ରମ ଝାଳ।
ଶୂନ୍ୟ ପଡ଼ିଥଲା ଶିଶୁ ରାଇଜର ଖେଳଣା ଝୁଲଣା ଦୋଳି
ତରୁ ତଳେ କେତେ ଯୁଗଳ ମୂରତି ରଚି ଥିଲେ ରମ୍ୟ କେଳି।
ପାଦପ ଆତପେ ବସିଥିଲି କ୍ଷଣେ ସାଥୀ ସଙ୍ଗେ ତୋଷ ମନେ
ଭାବୁଥିଲି ମନେ କରାମତି କେତେ ପୁଷ୍ପଧନୁ ପୁଷ୍ପବାଣେ।
ବାନ୍ଧି ପାରେ ନାହିଁ ସମାଜ ବନ୍ଧନ ବାନ୍ଧେ ନାହିଁ ଚାରି କାନ୍ଥ
ଆଦିମ ପ୍ରକୃତି କାମନା ବିଳାସ ପ୍ରକୃତି କୋଳରେ ଦୀପ୍ତ।
ବାଜି ଉଠିଥିଲା ମଧ୍ୟାହ୍ନ ବିରତି ସତର୍କ ସୂଚନା ଘଣ୍ଟି
ସଚେତନ ହେଲେ କର୍ମଚାରୀଗଣ ହେଲେ ଗୃହ ଅଭିମୁଖୀ।
ପୁଣ୍ୟ ଅବସରେ ପ୍ରସାଦ ସେବନ ମହତ ଉଦ୍ଦେଶ୍ୟ ରଖି
ନିକଟରେ ଥିବା ପୁଣ୍ୟ ଦେବାଳୟେ ମିଳିଥିଲୁ ଦୁହେଁ ଆସି।
ପୂର୍ବ ଅନୁଭବ ନଥିଲା ତ ମୋର ନିୟମ ଜାଣି ନ ଥିଲି
ପ୍ରସାଦ ସେବନ ପ୍ରକ୍ରିୟା ଦେଖିଣ ଆଶ୍ଚର୍ଯ୍ୟ ଚକିତ ହେଲି।
ଜାଣି ନ ଥିଲି ମୁଁ ମନ୍ଦିର ପ୍ରସାଦେ ଶ୍ରେଣୀ ବିଭାଗର କ୍ରମ
ସ୍ପେଶାଲ, ମଧ୍ୟମ, ନିମ୍ନ ଶ୍ରେଣୀ ପୁଣି ବସିବାରେ ତାରତମ୍ୟ।

ବସିବାକୁ ହେଲେ ଜଗିବାକୁ ହୁଏ ଚେୟାର ଟେବୁଲ ପାଖେ
ଭୋଜନରେ ତୃପ୍ତି ପାଏ ନାହିଁ ବ୍ୟକ୍ତି ଜଗିଥିଲେ ଲୋକ ପାଖେ।
ଭଜନ ଭୋଜନ ଆଉ ପୁଣି ଦାନ ଗୋପନରେ ହୋଇଥାଏ
ଉଦ୍‌ଭ୍ରାନ୍ତ ସମାଜେ ଉଦ୍‌ଭ୍ରାନ୍ତ ମଣିଷ ଏ ସତ୍ୟକୁ ଭୁଲି ଯାଏ।
ଜଗି ରହିଥିଲି କୁଣ୍ଠିତ ଚିତ୍ତରେ ଟେବୁଲକୁ ଲକ୍ଷ୍ୟ କରି
ବ୍ୟତିକ୍ରମ ହେଲେ ଆଉ କାଳେ କିଏ ବସିବେ ତାକୁ ଆବୋରି।
ମୋ ମନ ଅବସ୍ଥା ଲକ୍ଷ୍ୟ କରି ସାଥୀ ଅନନ୍ୟ ଉପାୟ ହୋଇ
ଭୁଲାଇବା ପାଇଁ କହିଥିଲେ ମୋତେ କବିତା ଲେଖିବା ପାଇଁ।
କବି ନୁହେଁ ମୁହିଁ କବିତା ଲେଖିବା ମୋ ପାଇଁ ଅତି କଠିନ
ଅନୁଭବ ଯାହା କରିଛି ସେତିକି କରିଛି ମାତ୍ର ବଖାଣ।
ହେ ଆରାଧ୍ୟ ଦେବ କୃଷ୍ଣ ବଳରାମ ମନ୍ଦିର ଭିତରେ ରହି
ତୁମ ଶ୍ରୀକ୍ଷେତ୍ରରେ ନାହିଁ ଭେଦ ଭାବ ଏଠି ତାହା କାହିଁପାଇଁ ?



# ନୂଆ ବରଷ

(୪୪)

ନୂଆ ବରଷ ନୂଆ ବରଷ ଆସୁଛି ହସି ହସି
ପୁରୁଣା ଯେତେ ଦୁଃଖ ଯାତନା ମନରୁ ଦେବା ପୋଛି।
ବିଶ୍ୱ ନିୟନ୍ତା ଜଗତ ପିତା ଦୟା କରିବେ ସତେ
ନବ ଚେତନା ନବ ପ୍ରେରଣା ଜଗାଇଦେବେ ଚିତ୍ତେ।
ଆଣିବା ନାହିଁ ଅନିଷ୍ଟ ଚିନ୍ତା ଇଷ୍ଟ ସ୍ମରଣ କରି
ପରହିତରେ ନିଜର ହିତ ଦେଖିବା ଆଗ କରି।
ବଦଳି ଯିବ ଚିନ୍ତା ଚେତନା ବଦଳି ଯିବ ମନ
ଆଦରି ନେବା ନୂତନ ରାହା ଲକ୍ଷ୍ୟ ଅନୁପମ।
ବରଜି ଦେବା ଅଳସପଣ ପ୍ରଫୁଲ୍ଲ ହେବ ଚିତ୍ତ
କରିବା କର୍ମ ଆଚରି ଧର୍ମ ସାଧିବା ପରହିତ।
ଅମୂଲ୍ୟ ଧନ ଆମ ଜୀବନ ସହଜେ ମିଳେ ନାହିଁ
ହସି ହସିକା ବଞ୍ଚିବା ଆମେ ହସାଇ ଦେବା ମହୀ।
ଆୟୁଷ ମୁଣି ହେଉଛି ଊଣା ରଖିବା ସଦା ହେଜ
କାଟିବା ପାଇଁ ଧରଣୀ ମାୟା ହୋଇବା ସଜବାଜ।

□□□

# ଶ୍ରୀପଞ୍ଚମୀ

## (୪୫)

ଛାଡ଼ିବା ଛାଡ଼ିବା ହେଉଛି ଛାଡ଼ି ଯାଇନି ଶୀତ
ମାଡ଼ିବା ମାଡ଼ିବା ହେଉଛି ମାଡ଼ିନାହିଁ ବସନ୍ତ ।
ଲୁଚି ଯାଇଥିଲା ଧରଣୀ ରାଣୀ ସୌନ୍ଦର୍ଯ୍ୟ ଶୋଭା
ଶିରୀହୀନ ଦିଶୁଥିଲା ତା' ଶୋଭା ନୟନ ଲୋଭା ।
ତେଜିଥିଲେ ପାଦପରାଜି ପତ୍ର ସମ୍ପଦ ରାଶି
ଦିଶୁଥିଲେ ଯଥା ସଂସାର ସୁଖ ତ୍ୟାଗୀ ସନ୍ନ୍ୟାସୀ ।
ଜଳ ହୋଇଥିଲା ଅନଳ ଅନଳ ଜଳ ପରି
ବସୁଥିଲେ ସର୍ବେ ଶରୀରେ ଶୀତବସ୍ତ୍ର ଆବୋରି ।
ରମଣୀୟ ଦିଶୁ ନ ଥିଲା ପଦ୍ମ ପୋଖରୀ ପାଣି
ଦରହାସେ ହସୁ ନ ଥିଲା ତହିଁ ପଙ୍କଜ ରାଣୀ ।
ସରିଗଲା ଶୀତ ରାଜୁତି ବଦଳିଲା ସମୟ
ବହିଲା ଦକ୍ଷିଣ ଦିଗରୁ ତୋରା ମୃଦୁ ମଳୟ ।
ଆସିଲେଣି ଦେବ ତପନ ତେଜି ଦକ୍ଷିଣ ଆଶା (ଦିଗ)
ଫୁଟାଇବେ ହସ ପଦ୍ମିନୀ ମୁଖେ ଦେଲେଣି ଆଶା ।
ଶୁଭ ଆଗମନୀ ସୂଚନା ଦେଲା ବସନ୍ତ ଦୂତ
ଫେରାଇବେ ଧରା ସୌନ୍ଦର୍ଯ୍ୟ ସଜ ହେଲେଣି ମାତ ।
ଉଭା ହୋଇଛନ୍ତି ପାଦପେ ନବ ପତ୍ର ମଣ୍ଡନେ
ଜଣାଇବେ ଶୁଭ ସ୍ୱାଗତ ମାତା ଶୁଭାଗମନେ ।
ଆସିଲା ଶୁଭ ଅବସର ପୁଣ୍ୟ ପଞ୍ଚମୀ ତିଥି

ଧରାବତରଣ କରିଲେ ଦେବୀ ଶ୍ରୀ ସରସ୍ୱତୀ ।
ମହା ସରସ୍ୱତୀ ସାରଦା ମାତା ଜ୍ଞାନ ଦାୟିନୀ
ନାଶିବେ ଅଜ୍ଞାନ ତିମିର ଶ୍ୱେତ ପଦ୍ମ ବାସିନୀ ।
ଜଣାଉଛି ଶୁଭ ଗୀତିକା କୋକିଳ ବନେ ବନେ
ଜଗାଉଛି ନବ ଭାବନା ଜନ ମାନସ ପ୍ରାଣେ ।
ତବ ନିରାଜନା ଆଶାରେ ସହକାର କାନନ
ଟେକିଛି ମୁକୁଳ ଚାମର କରିବାକୁ ବ୍ୟଜନ ।
ସ୍ୱାଗତ ଜଣାଏ ପ୍ରକୃତି ବାଢ଼ି ଶୋଭା ସମ୍ଭାର
ନବ ଜାଗରଣେ ଉଚ୍ଛୁଳି ଉଠେ ମର୍ତ୍ତ୍ୟ ମଣ୍ଡଳ
ନୂତନ ଆବେଗ ଉତ୍ସାହେ ପୁଲକିତ ଅନ୍ତରେ
ସାଜିଛନ୍ତି ପୂଜା ମଣ୍ଡପ ଶିଶୁ ବିଦ୍ୟା ମନ୍ଦିରେ ।
ଶୁଭ ବୁଦ୍ଧି ଦିବ୍ୟ କରୁଣା ମାଗନ୍ତି ଶିଶୁଗଣ
ତବ କୃପା ବିନ୍ଦୁ ପରଶେ ଧନ୍ୟ ହେବ ଜୀବନ ।
ଢାଳି ଦିଅ ମାଗୋ ଧରଣୀ ବୁକେ ଆଶିଷ ଧାର
ଜ୍ଞାନାଲୋକ ଜଳି ଉଠୁ ମା' ନାଶି ଜଡ଼ ତିମିର ।
କରୁଣାମୟୀଗୋ ତୋ ପାଦେ କରୁଅଛି ମିନତି
ତବ ଆରାଧନା କରିବି ମାଗୋ ଦିଅ ଶକତି ।
ଭରିଦିଅ ଦିବ୍ୟ ଚେତନା ମୂଢ଼ ଅନ୍ତରେ ମୋର
ଚିନ୍ତୁଥିବି ରଙ୍ଗା ପୟର ସଦା ସର୍ବଦା ତୋର ।



# ଯୁଗାବତାର ଶ୍ରୀରାମକୃଷ୍ଣ

(୪୬)

ଆଜି ଆନନ୍ଦେ ହେବା ମଗନରେ

ଗାଇ ଗାଇ ରାମକୃଷ୍ଣ ନାମ (ଘୋଷା)

ସେ ନାମେ ଘୁଞ୍ଚିବ କଳୁଷ କାଳିମା

ଆଲୋକିତ ହେବ ପ୍ରାଣରେ । (୧)

ଗାଇ..................

ରାମକୃଷ୍ଣ ନାମେ ଆସି ଧରାଧାମେ

ଜଗାଇଲେ ପ୍ରେମ ଭକ୍ତି ଜନମନେ

ସେ ତ 'ଏକ' ସେହି ଅନୁପମରେ । (୨)

ଗାଇ..................

ଦେଖି ବହୁ ମତ ବିବାଦରେ ରତ

ଧରଣୀ ବକ୍ଷରୁ ଶାନ୍ତି ଅନ୍ତର୍ହିତ

ଜାଣି ସନ୍ଧି କ୍ଷଣ ହେଲେ ଅବତୀର୍ଣ୍ଣ

ତାରିବେ ଏ ଧରାଧାମରେ । (୩)

ଗାଇ..................

ଆଚରିଲେ ତପ ଦେଖାଇଲେ ବାଟ
କେହି ନୁହେଁ ଭିନ୍ନ ବୁଦ୍ଧ, ଜୀନ, ଖ୍ରୀଷ୍ଟ
ସେ ତ ସର୍ବ ଧର୍ମର ମିଳନରେ। (୪)

ଗାଇ..................

କଳିଯୁଗରେ ସେ ପ୍ରେମ କଳ୍ପତରୁ
ଟାଳନ୍ତି ଆର୍ତ୍ତର ଆର୍ତ୍ତି ମହାମେରୁ
ସେ ତ ସୁଖ ଶାନ୍ତି ନିକେତନରେ। (୫)

ଗାଇ..................

ତାଙ୍କ ଶ୍ରୀପଦ୍ମରେ ପଶିବା ଶରଣ
କରିବା ଶ୍ରୀମୂର୍ତ୍ତି ହୃଦରେ ଧାରଣ
ସେ ତ ଅସୀମ କରୁଣା ଘନରେ। (୬)

ଗାଇ..................



*(ସ୍ୱାମୀ ବ୍ରହ୍ମାନନ୍ଦ ଜୟନ୍ତୀ ଉପଲକ୍ଷେ,*
*'ଶ୍ରୀରାମକୃଷ୍ଣ' ଦିବସ ଅବସରରେ ଲିଖିତ)*

# ନିବିଡ଼ତା

(୪୭)

ରାମ ଭାଇ ତୁମ ପ୍ରବନ୍ଧ ପଢ଼ିଲି
'ନିବିଡ଼ତା' ଯାର ନାମ
ଜୀବନର ସଂଜ୍ଞା ନିରୂପି ଦେଇଛ
ଜନ୍ମ ମୃତ୍ୟୁ ବ୍ୟବଧାନ ............।। ୧ ।।
ନିବିଡ଼ତା ଅଟେ ସମ୍ପର୍କର ସେତୁ
ବ୍ୟକ୍ତି, ଭାବ, ପରିବେଶ
ଫାଙ୍କ ନରଖି ସେ ବାନ୍ଧି ଦେଇଥାଏ
ଅପୂର୍ବ ବନ୍ଧନ ଫାଶ.................।। ୨ ।।
ନିବିଡ଼ତା ଦିଶେ ପ୍ରକୃତି ରାଜ୍ୟରେ
ଘନ ଅରଣ୍ୟକୁ ଗଲେ
ଛାଡ଼ି ନ ଦିଅନ୍ତି ତପନ କିରଣ
ପଡ଼ିବାକୁ ଭୂଇଁ ତଳେ.................।। ୩ ।।
ବଡ଼, ସାନ, ଲତା, ଗୁଳ୍ମ ଭେଦ ଭାବ
ପାଶୋରି ଦେଇଣ ମନୁ
ଛନ୍ଦି ହୋଇଥାନ୍ତି ନିବିଡ଼ ବନ୍ଧନେ
ଦିଶେ ଯଥା ଏକ ତନୁ...............।। ୪ ।।
ମା ବାନ୍ଧିଥାଏ ସନ୍ତାନଗଣଙ୍କୁ
ନିବିଡ଼ ମମତା ଫାଶେ
ବାନ୍ଧେ ପ୍ରଣୟିନୀ ମନର ମଣିଷ
ନିବିଡ଼ ପ୍ରଣୟ ଆଶେ.................।। ୫ ।।

ସମ୍ପର୍କ ନିବିଡ଼ ହୋଇଥିଲେ ସୁଖୀ
ହୁଏ ଦାମ୍ପତ୍ୟ ଜୀବନ
ବନ୍ଧୁତାର ଡୋରି ଯାଏନାହିଁ ଛିଡ଼ି
ନିବିଡ଼ ଥିଲେ ବନ୍ଧନ..................॥ ୬ ॥
ବିଶ୍ୱସ୍ରଷ୍ଟାଙ୍କର ଶ୍ରେଷ୍ଠ ଜୀବ ରୂପେ
ହୁଅଇ ମଣିଷ ଗଣ।
ପାଶୋରି ଦିଏ ସେ ନିବିଡ଼ତା ଭାବ
ଭାଗ୍ୟର ଏ ବିଡ଼ମ୍ବନା.................॥ ୭ ॥
ପାଶୋରି ଦେଉଛି ପିତାମାତାଙ୍କର
ନିବିଡ଼ ବାତ୍ସଲ୍ୟ ସ୍ନେହ
ଭୁଲୁଛି ସଂସ୍କୃତି ପରମ୍ପରା ରୀତି
ଜୀବନ କରି ବିପନ୍ନ...................॥ ୮ ॥
ଧର୍ମ ପିତାମାତା, ସ୍ୱର୍ଗ ପିତାମାତା
ପୁଣ୍ୟ ତାଙ୍କ ପଦ ସେବା
ପୁଣ୍ୟ ଭାରତର ଅମୃତ ସନ୍ତାନ
ହେଜ ଏହା ନିଶି ଦିବା .............॥ ୯ ॥

❑❑❑

*(ଡକ୍ଟର ରାମଚନ୍ଦ୍ର ନାୟକଙ୍କ*
*'ନିବିଡ଼ତା' ପ୍ରବନ୍ଧ ପଢ଼ିଲା ପରେ ଲିଖିତ)*

# ମାମୁଁ ଘର ଗାଁ

## (୪୮)

ଅତି ପ୍ରିୟ ମୋର ମାମୁଁ ଘର ଗାଁ
କେଡ଼େ ସୁନ୍ଦର ସେ ସତେ
ଭାବି ଦେଲେ ଥରେ ମୋ ଆଖି ଆଗରେ
ଛବିଟିଏ ପରି ଦିଶେ ..................॥ ୧ ॥

ଛୋଟ ନଈଟିଏ ବହି ଯାଉଥିଲା
ଆହାର ଥିଲା ତା ନାଁ
ଆମ୍ବ, ବାଉଁଶର ବଣ ତା ତୀରରେ
ଶୋଭା ଦିଶୁଥିଲା ଗାଁ.....................॥ ୨ ॥

ଭାଦ୍ରବ ମାସରେ ରବିବାର ଦିନ
ଭାଲୁକୁଣୀ ଓଷା କରି
ଏ କୂଳେ ସେ କୂଳେ ମେଳ ହେଉଥିଲେ
ଓଷେଇତି ସୁକୁମାରୀ .....................॥ ୩ ॥

ମିଛି ମିଛିକା କଳି ଲାଗୁଥିଲେ
"ବଢ଼େଇ ଘରର ଚଟୁ
ଆମ ଭାଲୁକୁଣୀ ଚହଟ ଚିକ୍କଣ
ତମ ଭାଲୁକୁଣୀ ଫାଟୁ"...................॥ ୪ ॥

ଖେଳ ଘର ଭାତ ରାନ୍ଧି ଖାଉଥିଲୁ
କରମଙ୍ଗା ଚୋରି କରି
ଲୁଣ ଲଙ୍କା ଦେଇ ପାଗି ଦେଉଥିଲୁ
କମଳା ଓ ବରକୋଳି.................. ॥ ୫ ॥

ତୋଟାମାଳ ବୁଲି ଖୋଜି ଆଣୁଥିଲୁ
　　　　କ୍ଷିରିକୋଳି ବେତ କୋଳି
ବଇଁଚ କୋଳିରେ ହାର ଗୁନ୍ଥି ଦେଇ
　　　　କରୁଥିଲୁ ଗଳାମାଳି ...............॥ ୬ ॥
କାହିଁଗଲା ସେହି ପିଲାଦିନ ଏବେ
　　　　ଖୋଜିଲେ ମିଳିବ ନାହିଁ
ମନେ ପଡ଼ିଗଲେ ମାମୁଁ ଘର ଗାଁ
　　　　ମନହୁଏ ହାଇଁ ପାଇଁ .............॥ ୭ ॥

□□□

# ସୂର୍ଯ୍ୟସ୍ନାତା

## (୪୯)

ସେଦିନ ଦେଖିଲି ତାକୁ ହନୁମାନ ମନ୍ଦିର ପ୍ରାଙ୍ଗଣେ
ମୋ ପାଖରେ ବସିଥିଲା ଲାଗି ଅତିଶୟ ନିବିଡ଼ ଭାବରେ
କଥା ଛଳେ ପଚାରିଲି ନାଁ କ'ଣ ଘର କେଉଁଠାରେ
ସୂର୍ଯ୍ୟସ୍ନାତା ନାଁ ମୋର ରହୁଛି ମୁଁ ଶ୍ରୀ ବିହାରରେ ।
ନାଁ ଶୁଣି ମୁଗ୍ଧ ହେଲି ଭାବିଲି ମୁଁ କିଏ ନାମଦାତା
ମୁଖେ ତାର ଉଠୁଥିଲା ଫୁଟି ଅନୁପମ ଲାବଣ୍ୟର ଛଟା ।
କ୍ରମେ ଜାଣିଥିଲି ତାର ଆନ୍ଦୋଳିତ ଜୀବନର କଥା
ନେଇଥିଲି ଗୁରୁଙ୍କ ସାନିଧେ ପାଇଲା ସେ ଅଭୟ ଭରସା ।
ମମତା ଡୋରିରେ ମୋତେ ବାନ୍ଧି ଦେଲା ଶକ୍ତବନ୍ଧନରେ
ମୋର ନୁହେଁ ବୋଲି ସିଏ କହିବାକୁ ନ ଆସେ ମନରେ ।
ବାନ୍ଧିନାହିଁ ମୋତେ ଖାଲି ବାନ୍ଧିଛି ମୋ ପୁରା ପରିବାର
ସମ୍ପର୍କ ତ ଏ ଜନ୍ମର ନୁହେଁ ମନେହୁଏ ଜନ୍ମ ଜନ୍ମାନ୍ତର ।
ନ ସହେ ସେ ମୋ ଉପରେ ଆଉ କା'ର ରହୁ ଅଧିକାର
ମୋ ପାଖରେ ବସିଥିଲେ ଯଦି କେହି ପ୍ରିୟ ଲୋକ ମୋର ।
ହଟାଇ ଦିଅନ୍ତା ସତେ ଲୋକ କିମ୍ବା ଛବିକୁ ତାଙ୍କର
କହୁଥାନ୍ତା ନାହିଁ ନାହିଁ ତୁମେ ନୁହଁ ସେ ଏକା ମୋହର ।
ଝିଅ ତ ମିଳିଛି ମୋତେ ମିଳିନାହିଁ ପୁତ୍ରବଧୂ ସ୍ନେହ
ସତେ କି ମିଳିବ କୃପା ବାଞ୍ଛା ମୋର ହୋଇବ ପୂରଣ ।
ତାର ସ୍ନେହ ସେବା ଯତ୍ନେ ଅସୁସ୍ଥତା ହୋଇଛି ମୋ ଦୂର
ତା ଜୀବନେ ସୁଖ ଆସୁ ଆଶୀର୍ବାଦ ଢାଳେ ମୋ ଅନ୍ତର ।

□□□

# ସାଥୀଟିଏ ମୋର ଲୋଡ଼ା

(୫୦)

ନିଃସଙ୍ଗତା ଏକ ଆପେକ୍ଷିକ ଶବ୍ଦ
ବୁଝାଇ ହୁଅଇ ନାହିଁ
ଯେ ଭୋଗିଛି ତାର ଦଂଶନର ଜ୍ୱାଳା
ଅନୁଭବୀ ଅଟେ ସେହି..........॥୧॥

ସାଙ୍ଗ ଖୋଜିଥିଲେ ପରମ ଈଶ୍ୱର
ଲୀଳା ରଚିବାର ବେଳେ
ସୃଷ୍ଟି କରିଥିଲେ ପ୍ରକୃତି ରୂପିଣୀ
ଯୋଗମାୟା ଯୋଗ ବଳେ......॥୨॥

ସୁକୁମାରୀ ଲତା ଲୋଡୁଥାଇ ସାଙ୍ଗ
ନିଃସଙ୍ଗ ଜୀବନେ ତାର
ଶକ୍ତ ବୃକ୍ଷ ଦେଖି ଆଶ୍ରୟ ନିଏ ସେ
ଯେ ବୋହି ପାରିବ ଭାର.......॥୩॥

ନିର୍ଝରିଣୀ ଝର ସଦା ନିମ୍ନଗାମୀ
ସାଗର ସଙ୍ଗମ ଆଶେ
ପୂର୍ଣ୍ଣ ହୁଏ ତାର ଆଜନ୍ମ ଲାଳସା
ପାରାବାରେ ଯେବେ ମିଶେ.......॥୪॥

ସାଙ୍ଗ ହୋଇ ସୁଖ ଦୁଃଖ ବାଣ୍ଟୁଥିଲେ
ଅଚ୍ଛଜୀବୀ ଦୁଇ ପକ୍ଷୀ
ଭାଙ୍ଗି ଦେଇଥିଲା ନିଦାରୁଣ ବ୍ୟାଧ
ସଙ୍ଗସୁଖ ଶର ଯୋଖି.............॥୫॥

ଦେଖି ସାଥୀହରା ବିରହ ବିଧୁରା
ପକ୍ଷୀଟିକୁ ନିରିମାଖି
ରଚିଥିଲେ ମହାକାବ୍ୟ 'ରାମାୟଣ'
ଆଦିକବି ବାଲମୀକୀ............||୬||

ଏକାନ୍ତ ପଥିକ ବାଟ ଚାଲୁ ଚାଲୁ
ପଥ ଶ୍ରମ ଉଣା ପାଇଁ
ବିଶ୍ରାମ ଆଶାରେ ଆଶ୍ରା କରିଥାଏ
ସୁଶୀତଳ ବୃକ୍ଷ ଛାଇ.......... ||୭||

ସଙ୍ଗ ଲିପ୍‌ସା ଏକ ଆଦିମ ପ୍ରବୃତ୍ତି
ଜୀବନ ନିର୍ବାହ ପାଇଁ
ସସାଗରାଧରା ବିଅର୍ଥ ଲାଗଇ
ସାଥୀ ଜଣେ ଯଦି ନାହିଁ........ ||୮||

ଆତ୍ମା ଅନୁରାଗୀ ସଂସାର ବିରାଗୀ
ଭୁଲିଥାନ୍ତି ସଙ୍ଗସୁଖ
ନିଃସଙ୍ଗ ଜୀବନ ବିଜନ ମୁହୂର୍ତ୍ତ
ଦେଇଥାଏ ତାଙ୍କୁ ସୁଖ...........||୯||

ଥକି ପଡ଼ିଲିଣି ସହି ସହି ପ୍ରଭୋ
ନିଃସଙ୍ଗ ଜୀବନ ପୀଡ଼ା
ଧନ, ଯଶ, ଖ୍ୟାତି ମାଗୁ ନାହିଁ କିଛି
ଅନ୍ତରଙ୍ଗ ସାଥୀ ଲୋଡ଼ା ।.....||୧୦||

□□□

# ଅନ୍ତିମ ଅଭିଳାଷ

(୫୧)

ଜୀବନ ନାଟକ ସରି ସରି ଆସେ
 ନିକଟ ହେଲାଣି ଶେଷ ଦୃଶ୍ୟ
ଯବନିକା ପାତ ଏବେ ହେବ ପରା
 ବେଶି ବାକି ନାହିଁ ଅବଶେଷ... (୧)

ଆତ୍ମୀୟ ସ୍ୱଜନ ବନ୍ଧୁ ପରିଜନ
 ସବୁ ମନେ ହୁଏ ଖେଳସାଥୀ
ବାଟ ଖର୍ଚ୍ଚ କିଛି ବାନ୍ଧି ପାରିଲିନି
 ମାୟା ଖେଳ ଘରେ ସଦା ମାତି... (୨)

ଇଷ୍ଟ ବୋଲି ଯା'ଙ୍କୁ ଚିହ୍ନାଇଲେ ଗୁରୁ
 ଭେଟ ନ ପାଇଲି ଜୀବନରେ
ଆକୁଳ ମିନତି ଜଣାଉଛି ପଦେ
 ଭେଟ କରାଇବେ ପରପାରେ... (୩)

ଗୁରୁ ରୂପେ ଇଷ୍ଟ ହାତ ଧରିଥାନ୍ତି
 ଅବାଟରୁ ବାଟେ ନେବା ପାଇଁ
ବାଟହୁଡ଼ା ଏକ ଅଧମ ବାଟୋଇ
 ବାରେ ଦୟାକର ବିଶ୍ୱସାଇଁ... (୪)

ଲିଭି ଯାଉ ଏହି ଜୀବନ ପ୍ରଦୀପ

ଲୋକ ଲୋଚନର ଅନ୍ତରାଳେ

ପରିଜନ କେହି ବିଳପି ନ ଉଠୁ

ସଂସାରର ଶେଷ ଖେଳ ବେଳେ... (୫)

ଦୟାମୟ ହରି ଦୟା କରିଥିବେ

ଦୃଷ୍ଟି ପଥାରୁଢ଼ ହେବ ମୋର

ଗୁରୁଙ୍କ ମୂରତି ଗୁରୁଙ୍କ ମହିମା

ହେଉଥିବ ମନ ବାରମ୍ବାର... (୬)



# ଅସୁସ୍ଥତା

(୫୨)

ତୁମେ କି ଜାଣିନ ସଖା ଅସୁସ୍ଥତା କେତେ ଦୁର୍ବିସହ
ସହି ହୁଏ ସେତେବେଳେ ଥିଲାବେଳେ ପ୍ରିୟଜନ ସହ ।
ବେଳେବେଳେ ଶିଶୁ ଚାହେଁ ହୋଇଯାନ୍ତାଟିକି ତାକୁ ଜର
ମା’ ତାର ବସିଥାନ୍ତା ଜଗି ନିରାପଦ ମା କୋଳ ତାର ।
ବେଳେବେଳେ ଅସୁସ୍ଥ ବ୍ୟକ୍ତିକୁ ସଙ୍ଘୋଳନ୍ତି ଆତ୍ମୀୟ ସ୍ୱଜନ
ଶାନ୍ତ ହୁଏ ସନ୍ତାପିତ ପ୍ରାଣ ନିରେଖିଣ ପ୍ରିୟ ପରିଜନ ।
ସାମାଜିକ ବିଧାନ ସତରେ କେତେ ଉଚ୍ଚ କେତେ ଯେ ମହାନ
ସୃଜିଛନ୍ତି ବିଧାତା ଏ ନୀତି ବୁଝିବାକୁ ଉଦ୍ଦେଶ୍ୟ ପ୍ରଚ୍ଛନ୍ନ ।
ଉଲ୍ଲସି ଉଠିବ ନାହିଁ କେହି ଯଦି ଦେଖି କା’ର ସୁଖ
କାତର ନ ହେବ ଯଦି ଅନ୍ତରରେ ଦେଖିକା’ର ଦୁଃଖ ।
ବ୍ୟର୍ଥ ହେବ ଜୀବନର ସଂଜ୍ଞା ପର ପାଇଁ ଯାହା ଉତ୍ସର୍ଗୀତ
ସ୍ୱାର୍ଥ ଲାଗି ଜନ୍ମ ନୁହେଁ ସେହି ପରହିତେ ଜୀବନ ସାର୍ଥକ ।
ମନରେ ନ ଥାଏ ବଳ ଯଦି କେହି ସୁସ୍ଥ ନ ରହିଛି
ସତ୍‌କର୍ମ ସତ୍‌ଚିନ୍ତା ଭଳି ଶୁଭ କର୍ମ କରିବ କେମିତି ।
ଏକାନ୍ତ ଜୀବନ ସିନା ବାଛିଛନ୍ତି ମୁନୀ ଋଷିଗଣ
କାମ୍ୟ ନୁହେଁ ନିଃସଙ୍ଗତା ସଂସାରୀର ସମାଜ ଜୀବନ ।
ସମାଜରେ ସୃଷ୍ଟିତାର ସାମାଜିକ ଚେତନା ତାହାର
ସମାଜ ମଙ୍ଗଳ ପାଇଁ ବଳିଦିଏ ସ୍ୱାର୍ଥ ଆପଣାର ।
କାର୍ଯ୍ୟକ୍ଷମ ହୁଏ ବ୍ୟକ୍ତି ସୁସ୍ଥ ଦେହ ସୁସ୍ଥ ଥିଲେମନ
ସୁସ୍ଥ କରି ପରିବେଶ କର ସୁସ୍ଥ ସମାଜ ଗଠନ ।

□□□

# ବନ୍ଧୁ ବ୍ରଜବାବୁ

## (୫୩)

ଉଡ଼ା ଚଢ଼େଇ ମୁଁ ଆସଥିଲି ଉଡ଼ି
ଖୋଜି ଖୋଜି ଦିନେ ଆଶ୍ରୟ
ପାଇଥିଲି ଶେଷେ ପ୍ରତାପ ଶାସନ
କଳ୍ପବଟ ସମ ବିଦ୍ୟାଳୟ

ସ୍ନେହ ସମ୍ମାନର ଶାଖା ପରିଥିଲେ
ଶିକ୍ଷକ ଶିକ୍ଷିକାଗଣ
ଆଦରି ନେଲି ମୁଁ ପରମ ଆନନ୍ଦେ
ଭୁଲି ଦୁଃଖ ଅଭିମାନ

ସମୟ ଚକ୍ରରେ ଘୁରିଯାଇଥିଲା
ଅଳପ କେତୋଟି ବର୍ଷ
ଶାସନ କଳର ଅନୁଶାସନରେ
କାର୍ଯ୍ୟକାଳ ହେଲା ଶେଷ

ଅଳପ ଦିନରେ ସାଇତି ରଖିଛି
କଥା କେତେ ଅସୁମାରି
ହୃଦୟ ବାନ୍ଧିଛି ଆପଣଙ୍କରସେ
ସ୍ନେହ ମମତାର ଡୋରି

ସାଧୁ ଦରଶନ ବନ୍ଧୁ ଦରଶନ
ଦେବ ଦରଶନ ପାଇଁ
ସାଥୀ ନୁହେଁ ସାନ ଭାଇଟିଏ ପରି
ସଙ୍ଗେ ନେଇଛନ୍ତି ବୋହି

ଯିବା ଆସିବାର ଚଳନ୍ତି ପଥରେ
ବସା ମୋର ପଡ଼ିଥାଏ
ଘରେ ପଶି ଥରେ ମୁହଁ ମାରି ଦେଲେ
ଅନ୍ତର ମୋ ପୂରିଯାଏ

ଦେଖୁଛି ଆଜି ମୁଁ ଉଚ୍ଛୁଳି ପଡୁଛି
ବିଦ୍ୟାଳୟ ସଭା କକ୍ଷ
ଅନୁଶାସନର ରୁଟିନ୍ ଜୀବନେ
ଘୁରିଯାଇଅଛି ଅଖ

ଗୃହସ୍ଥ ଜୀବନେ ସନ୍ୟାସୀ ଆପଣ
ପାଇଛି ମୁଁ ପରିଚୟ
ନିଷ୍କଣ୍ଟକ ହେଉ ପରାର୍ଥ ଜୀବନ
ଯଶ ହେବ ମଧୁମୟ

ଭୁଲିନାହିଁ କେବେ ଭୁଲିବି ନାହିଁ ମୁଁ
ପରମ ଆତ୍ମୀୟ ଭାବ
ସେଦିନ ଭୁଲିବି ଯେଉଁଦିନ ମୋର
ଏ ପିଣ୍ଡରୁ ଜୀବ ଯିବ

□□□

*(ଅବସର କାଳୀନ ବିଦାୟ ଉତ୍ସବ ଉପଲକ୍ଷେ)*

# ଜନ୍ମମାଟି ଦର୍ଶନେ

(୫୪)

ପଞ୍ଚଦଶସାତ ବରଷ ହେଲାଣି
ଛାଡ଼ି ଆସିଛି ମୁଁ ଜନମଭୂଇଁ
ଜୀବନ ସଞ୍ଜରେ ଝୁରିଲା ପରାଣ
ତା' ରୂପକୁ ଥରେ ଦେଖିବା ପାଇଁ ।।
ବହୁଦିନ ପରେ ପଡ଼ି ଥିଲା ଯୋଗ
ଯାଇଥିଲି ତା'ର କୋଳକୁ ଧାଇଁ
ଦେଖି ପାରିଲନି ପୂର୍ଣ୍ଣ ରୂପ ତା'ର
ଫେରିବାକୁ ହେଲା ନିରାଶ ହୋଇ ।।
ପ୍ରଥମେ ଭେଟିଲି ଉଚ୍ଚ ବିଦ୍ୟାଳୟ
ସାଜସଜା ଦେଖି ହୋଇଲି ତୋଷ
ଉତ୍ସବ ମୁଖର ବିଦ୍ୟାଳୟ ହତା
ବନ୍ଧୁ ମିଳନର ଥିଲା ଦିବସ ।।
ସୁସଜ୍ଜିତ ମଞ୍ଚେ ଦେଖିଲି ଗୁରୁଙ୍କୁ
ବୟସ ଯାହାଙ୍କୁ ଚାରିକୋଡ଼ି ଦୁଇ
ପଢ଼ିଥିଲି ପାଠ ଷଷ୍ଠ ସୋପାନରେ
କଳ୍ପନା ନେତ୍ରରେ ରହିଲି ଚାହିଁ ।।
ଭକ୍ତି ପୁଷ୍ପାଞ୍ଜଳି କରିଲି ଅର୍ପଣ
ବନ୍ଦିଲି ତାଙ୍କର ଚରଣ ଛୁଇଁ
ଆଶୀର୍ବାଦ ବାରି ଢାଳିଦେଲେ ଗୁରୁ
ମୋ ମସ୍ତକେ ତାଙ୍କ ଶ୍ରୀହସ୍ତ ଦେଇ ।।

ଦ୍ୱିତୀୟେ ଭେଟିଲି ମୋ ଶିଶୁ ବେଳର
ପ୍ରଧାନ ଗୁରୁଜୀ ଫକୀର ସାର୍
ଚରଣ ଛୁଇଁଲି ପରିଚୟ ଦେଲି
ଆନନ୍ଦରେ ହେଲେ ଅତି ଅଧୀର ।।
ବଖାଣି ବସିଲେ ଅତି ଆବେଗରେ
ଅତୀତ ଜୀବନ ସ୍ମୃତିର ମାଳ
ଚିତ୍ର ପରି ସବୁ ଭାସି ଉଠୁଥିଲା
ମୋ ନେତ୍ର ପଟଳେ ଥରକୁ ଥର ।।
ହସୁଥିଲା ଦିନେ ଯେଉଁ ଅନୁଷ୍ଠାନ
ପର୍ଯ୍ୟାପ୍ତ ଶିଶୁଙ୍କୁ କୋଳରେ ଧରି
ଅଛି ସେହି ଘର କୋଳ ଶୂନ୍ୟ ତା'ର
ପରିତ୍ୟକ୍ତ ଯେହ୍ନେ ସୁବର୍ଣ୍ଣପୁରୀ (ଲଙ୍କା ନଗରୀ) ।।
ଯାଇଛି ସେ ବେଳ କାଳ ସ୍ରୋତେ ବହି
ଗହଳ ଚହଳ ଶୁଭୁନି ଆଉ
ଶୁଭୁ ନାହିଁ ଆଉ ସୂତା କଟା ଗୀତ
'ଖଦି ପିନ୍ଧିବି ମୁଁ ଯେତେ ମୋଟା ହେଉ' ।।
ଆଗକୁ ଆଗକୁ ବଢ଼ାଇଲି ପାଦ
ପହଞ୍ଚିଲି ମାମୁଁଘର ଦାଣ୍ଡରେ
ବଦଳି ଯାଇଛି ଜ୍ୟାମିତି ଭୂଗୋଳ
ସ୍ଥାଣୁ ପରି ଛିଡ଼ା ହେଲି ସେଠାରେ ।।
ଦେଖିଲି ନାହିଁ ସେ ବକୁଳ ପାଦପ
ସୁଶୀତଳ ଛାୟା ପ୍ରଦାନକାରୀ
ଛିଡ଼ା ହୋଇଥିଲେ ଯୋଡ଼ିଯାଡ଼ି ହୋଇ
ପ୍ରବେଶ ପଥର ପ୍ରହରୀ ପରି ।।
ଶୁଭୁତ ନଥିଲା ବସନ୍ତ ଦୂତର
ମଧୁ ବୋଲା କୁହୁ କୁହୁ ତାନ
ଦୃଷ୍ଟି ପଥାରୂଢ଼ ହେଲା ନାହିଁ କାହିଁ
ଗହଳିଆ ଘଞ୍ଚ ଆମ୍ର କାନନ ।।

ଖୋଜୁ ଥିଲା ନେତ୍ର ହୋଇ ଆତୁରିତ

କଣ୍ଟେଇକୋଳିର ଗହଳ ବୁଦା

'ସାନପାସ୍' ଆସି ଚୋଲୁଥିଲି ଯହିଁ

ବିଦ୍ୟାଳୟ ପାଠ ରଖିଣ ଅଧା ।।

ଦେଖି ପାରିଲିନି ବୁଢ଼ି ମଙ୍ଗଳାଙ୍କୁ

ଅପୂର୍ଣ୍ଣ ରହିଲା ମନର ଆଶା

ଉଣା ପଡ଼ିଲା କି ଦର୍ଶନ ପିପାସା

ଭୋଗିବାକୁ ତେଣୁ ହେଲା ଏ ଦଶା ।।

ଦୂରରୁ ଜୁହାର କରୁଛି ମା'ଲୋ

ଲଗାଇଦେ ପୁଣି ତୋ କୃପା ଡୋରି

ତୃପ୍ତ ହେବ ମୋର ସନ୍ତାପିତ ପ୍ରାଣ

ତୋ ପାଦ ଯୁଗଳ ଦର୍ଶନ କରି ।।

ମନ ପୂରିଲାନି ଆଶା ମେଣ୍ଟିଲାନି

'ବନା ମହାଦେବ' ପବିତ୍ର ଦାଣ୍ଡେ

ମାଗି ପାରିଲିନି ଅମୃତ ଆଶିଷ

ମଥାପାତି ପଡ଼ି ରହିଣ ଦଣ୍ଡେ ।।

ଅପୂର୍ଣ୍ଣ ରହିଲା ଦର୍ଶନ ପିପାସା

ଯାଇ ପାରିଲିନି 'ଆହାର' କୂଳ

ପାରିଲିନି ଛୁଇଁ ପରମ ପାବନୀ

କଳ କଲ୍ଲୋଳିନୀ ଅମୃତ ଧାର ।।

ଜନମୁଖେ ଯାହା ଶୁଣିଲି ଅନ୍ତରେ

ଭରିଗଲା ଘୋର ବିଷାଦ ଛାୟା

ଆସୁନି ଜୁଆର ଫୁଲୁନି 'ଆହାର' (ଛୋଟ ଜୁଆରିଆ ନଈଧାର)

କାଟି ଦେଇଛି ସେ ସାଗର ମାୟା ।।

।। ୧୯୫୬ ।।

ଦେଖି ପାରିଲିନି ଗାଁ ଶମଶାନ
ମାଡ଼ି ପାରିଲିନି ତା ପୁଣ୍ୟମାଟି
ବାଢ଼ି ପାରିଲିନି ତା' ପାଦେ ପ୍ରଣତି
କୋଳରେ ଧରିଛି ମୋ ଜନ୍ମଦାତ୍ରୀ ।।
ନିସର୍ଗ ସୁନ୍ଦରୀ ରୂପ ବଦଳେଇ
ଗୃହଲକ୍ଷ୍ମୀ ବେଶେ ହୋଇଛି ଉଭା
ବିଲ ବଣ ଭୂଇଁ ଖାଲ ଖମା ଯହିଁ
ସର୍ବତ୍ର ବିରାଜେ ପ୍ରାସାଦ ଶୋଭା ।।
ବାକି ରହିଗଲା ନୟନ ପିପାସା
ଲକ୍ଷ୍ୟ ଯାହା ଥିଲା ଦେଖିବ ବୋଲି
ସାଙ୍ଗସାଥୀମେଳେ ସ୍ୱାଧୀନ ନଥିଲି
ସୀମିତ ସମୟେ ଆସିଲି ଫେରି ।।
ଭଗ୍ନମନ ଭଗ୍ନ ହୃଦୟ ନେଇଣ
ଯାନ୍ତ୍ରିକ ବାହନେ ବସିଲି ଆସି
ପ୍ରଣତି ଜଣାଇ 'ଚଣ୍ଡିଆଗଡ଼ି'କୁ
ଯେଉଁଠି ଲୁଚିଛି ମୋ ବାଲ୍ୟସ୍ମୃତି ।।

❐❐❐

# ଜନନୀ ସାରଦା ଦେବୀ

(୫୫)

ଜନନୀ ମା ଜ୍ଞାନଦାତ୍ରୀ ସାରଦା ସେ ସରସ୍ୱତୀ
ବନ୍ଦନା କରୁଛି ତାଙ୍କ ରଙ୍ଗା ପୟର
ଅବତରି ଧରାଧାମେ ଜୟରାମବାଟୀ ଗ୍ରାମେ
ବିତରିଲେ ଜ୍ଞାନ ନାଶି ଜଡ଼ ତିମିର
ରାମକୃଷ୍ଣ ଲୀଳା ସଙ୍ଗିନୀ
ବିଶ୍ୱ ଜନନୀ ସେ ପୁଣି ସଂଘ ଜନନୀ.................॥୧॥

ପାଳିଲେ ସନ୍ତାନଗଣେ ଅନାବିଳ ସ୍ନେହଦାନେ
ଅନ୍ତରାଳେ ଲୁଚାଇଲେ ନିଜ ସ୍ୱରୂପ
ନିର୍ଜନ ଅନ୍ଧାର ରାତି ସଙ୍ଗେ କେହି ନାହିଁ ସାଥୀ
ବେଳଜାଣି ପ୍ରକାଶିଲେ ନିଜର ରୂପ
ଧନ୍ୟ ସେହି ଦସ୍ୟୁ ଦମ୍ପତ୍ତି
ତୋଷିଥିଲେ ଅବା କେବେ କୈଳାସ ପତି ॥୨॥

କନ୍ୟାରୂପେ ଆଦରିଲେ ଅପତ୍ୟଭାବେ ବାନ୍ଧିଲେ
ଭାବରେ ହୋଇଲେ ବନ୍ଧା ଜଗତମାତ
ଭାବମୟୀ ଭବାନୀଙ୍କୁ ଭାବରେ ଡାକିଲେ ତାଙ୍କୁ
ଭାବରେ ଦିଅନ୍ତି ଧରା କଥାଟି ସତ
ଭାବକୁ ସେ ସଦା ନିକଟ
ଭାବରେ ଧୋଇଲା ପାଦ ମୂଢ଼ କୈବର୍ତ୍ତ:......................॥୩॥

ଦିଅ ମା ଆଶିଷ ଢାଳି          ସନ୍ତାନ କରନ୍ତି ଅଳି
ସିଞ୍ଚି ଦିଅ ଧରାବକ୍ଷେ କରୁଣାବାରି
ଜଳିଉଠୁ ଜ୍ଞାନ ଦୀପ          ଲୁଚିଯାଉ ପାପ ତାପ
ଖେଳିଯାଉ ମନ୍ଦାକିନୀ ଶାନ୍ତି ଲହରୀ
ତବଇଚ୍ଛା ହେଉ ପୂରଣ
ମାଗୁଣି ଏତିକି ମାଗୋ କରହେ ପୂର୍ଣ୍ଣ....................।।୪।।



# ଗୁରୁବନ୍ଦନା

(ଗୁରୁପୂର୍ଣ୍ଣିମା ଉପଲକ୍ଷେ)

(୫୬)

ଜୟଗୁରୁଦେବ ଜୟ ଗୁରୁଦେବ ଜୟ ଗୁରୁଦେବ ଜୟ
ଗୁରୁ ମହାଶକ୍ତି ଗୁରୁ ଏକାଗତି ହରିବାକୁ ଭବଭୟ
ଗୁରୁ ନାମଟି ସାର
ମନସୂତ୍ରେ ଗୁନ୍ଥି କର ହାର...
ଗୁରୁନାମଟି ସାର................ ।।୧।।

ଗୁରୁନାମ ଗଣ୍ଠିଧନ କରିଥିଲେ ମିଳିବ ଅମୂଲ୍ୟ ନିଧି
ଧର୍ମ ଅର୍ଥ କାମ ମୋକ୍ଷ ସେ ଦିଅନ୍ତି ତାରନ୍ତି ଭବବାରିଧି
ସେ ଯେ କରୁଣା ଘନ
ତାଙ୍କ ଜୟ ହେଉ ଅନୁକ୍ଷଣ...
ସେ ଯେ କରୁଣାଘନ.............।।୨।।

ଜୀବନର ପ୍ରତିକ୍ଷଣେ ଅନୁକ୍ଷଣେ ଗୁରୁଏକା ଆମ ସାଥୀ
ଚଳାନ୍ତି ଆମର ଜୀବନ ରଥକୁ ହୋଇଥାନ୍ତି ସେ ସାରଥୀ
ତାଙ୍କ ଅମୃତ ବାଣୀ
ସଦାମନେ ହେଉଥିବା ଗୁଣି....
ତାଙ୍କ ଅମୃତବାଣୀ.....................॥୩॥

ଗୁରୁ ଆମ ବ୍ରହ୍ମା ଗୁରୁ ଆମ ବିଷ୍ଣୁ ଗୁରୁ ଆମ ମହେଶ୍ୱର
ଗୁରୁ ପିତାମାତା ଗୁରୁ ତ୍ରାଣକର୍ତ୍ତା ଗୁରୁ ସକଳ ଆଧାର
ତାଙ୍କ ପଦ ଯୁଗଳ
ପଖାଳିବା ଢାଳି ଅଶ୍ରୁଜଳ..............॥୪॥
ତାଙ୍କ ପଦ ଯୁଗଳ........



# ପ୍ରଭାତ ବାର୍ତ୍ତା

(୫୭)

୧- ସୁଖ ଦୁଃଖ ଭରା ଗୋଟିଏ ବରଷ
 ମାଗୁଛି ଆଜି ମେଲାଣି
 ନୂଆ ଆଶା ନୂଆ ଭରସାର ସୂର୍ଯ୍ୟ
 ପ୍ରାଚୀ ନଭେ ଉଇଁଲାଣି
 ଜାଗ ଜଗତ, କର ସ୍ୱାଗତ,
 ଏ ବାର୍ତ୍ତା ଜଣାଏ 'ଶୁଭ ପ୍ରଭାତ'।

୨- ଉଠ ବନ୍ଧୁ, ଉଠ ବେଗେ ଆଳସ୍ୟ ବିରଜି
 ନୂତନ ଆବେଗେ ଉଭା 'ନୂଆ ବର୍ଷ' ଆଜି
 ଭରିଦେବ ମନେ ପ୍ରାଣେ ନବ ଉନ୍ମାଦନା
 ହସି ଉଠୁ ବିଶ୍ୱମ୍ଭରା ଏହାହିଁ କାମନା।

୩- ନୂଆ ବରଷ,
 ଦୁଃଖ ଆଣିବ କି ସୁଖ ଆଣିବ
 ଜାଣିବାର ନାହିଁ ସାଧ
 ପ୍ରାର୍ଥନା କରୁଛି ମନରୁ ତୁମର
 ଘୁଞ୍ଚି ଯାଉ ଅବସାଦ।

୪- ନବ ଚେତନାର କଳସ ଧରି ଆସିଅଛି ଉଷା ରାଣୀ
 ବୁଣି ଦେବା ପାଇଁ ଧରଣୀ ବକ୍ଷେ ସଜବାଜ ହୋଇଲାଣି
 ତାମସୀ ତନ୍ଦ୍ରା ତେଜି ତୁରନ୍ତ ଦେଖ ଆଲୋକ ସଜା
 ଜାଗ୍ରତ ହୁଅ ଜଗତବାସୀ ବଜାଇ ବିଜୟ ବାଜା।

୫-  ହସୁଛି ଉଦୟ ରବି ଉଦୟ ଅଚଳେ
ପ୍ରଭାତ ମନ୍ତ୍ର ଗାଆନ୍ତି ବିହଙ୍ଗମ ଦଳେ
ଶୁଭ ବାର୍ତ୍ତା ବୋହି ନିଏ ମୃଦୁ ସମୀରଣ
ନିଦ୍ରା ତେଜି ଏବେ ବନ୍ଧୁ କର ତା ଗ୍ରହଣ।

୬-  ଲୁଚିଲେ ଗୋଟି ଗୋଟି ଆକାଶୁ ତାରା
ପୂରୁବ ଦିଗୁ ଝରେ ଆଲୋକ ଧାରା
ସେ ଆଲୋକେ ଅନ୍ତରେ ଜାଗୁ ପୁଲକ
ପୁଲକିତ ହୋଇ ଉଠୁ ଧରା ମୂଳକ।

୭-  ସୁଖ ନିଦ୍ରା ତେଜି ଏବେ କର ଦରଶନ
ପୂରୁବ ଗଗନ ଦିଗେ ଉଜ୍ଜ୍ୱଳ ବରଣ
ଆଗମନ କରୁଛନ୍ତି ରବି ନାରାୟଣ
ଧରା ବୁକେ ଜଗାଇବେ ଶକ୍ତିର ସ୍ପନ୍ଦନ।

୮-  ଉଷା ରାଣୀ ହାତେ ଫଗୁ ଧରି
ଆଙ୍କିଲାଣି ଆସି ପଲ୍ଲୀ ଭୂଇଁ
ଉଠ ବନ୍ଧୁ ଏବେ ସକାଳ ସୂରୁଜ
ଉଇଁବାକୁ ଆଉ ଡେରି ନାହିଁ
ମଙ୍ଗଳ ସଙ୍ଗୀତ ଗାଇ ଗାଇ
ଶୁଭ ବାର୍ତ୍ତା ପୁଣି ଶୁଭ ସମାଚାର
ପ୍ରଭାତ ବିହଙ୍ଗ ଯାଏ କହି।

୯-  ଶୁଭ ଆଶା ଶୁଭ ସୂଚନା ଧରି
ଉଭା ଆଜି 'ସୁପ୍ରଭାତ'
ନିଦ୍ରା ପରିହରି ଚିତ୍ତେ ସ୍ମରି ହରି
କରିବା ତାକୁ ସ୍ୱାଗତ।

୧୦-  ଉଠାଇ ଦେଉଛି ଦେଖ ହେ ବନ୍ଧୁ ପ୍ରଭାତୀ ତାରା
ଝରି ପଡୁଅଛି ବିଶ୍ୱରେ ବିଭୁ ଆଶିଷ ଧାରା।

୧୧-  ପ୍ରଭାତିଲା ଉଦୟ ଅଚଳ ଶେଷ ହେଲା ନିଶି
ସୁଖ ଠାରୁ ସୁଖ ଆଶାରେ ଥାଏ ଆନନ୍ଦ ବେଶି।

୧୨- ଉଠ ବନ୍ଧୁ ଉଠ ପ୍ରଭାତ ଉଙ୍କି ମାରେ ଦୁଆରେ

ଧରିଅଛି ଶୁଭ 'ସଦିଚ୍ଛା' କର ସ୍ୱାଗତ ତାରେ।

୧୩- 'ସୁପ୍ରଭାତ' ଜଣାଉଛି ନୀତି ବାକ୍ୟସାର

ଲକ୍ଷ୍ୟସ୍ଥଳ ଲଭିବା ଅପେକ୍ଷା ଯାତ୍ରା ଶ୍ରେୟସ୍କର।

୧୪- 'ସୁପ୍ରଭାତ' କହି ଯାଉଅଛି କାନେ କାନେ

କାହାରି ଅନିଷ୍ଟ ଚିନ୍ତା ନ ଆଣନ୍ତୁ ମନେ।

୧୫- ହସିଲାଣି ପୂର୍ବ ଦିଗ ହସିଲା ପ୍ରକୃତି

ନିଦ୍ରା ତେଜି ଦେଖ ବନ୍ଧୁ ମଙ୍ଗଳ ପ୍ରଭାତୀ

'ସୁପ୍ରଭାତ' କହି ତୋଷ ମନ ସଭିଙ୍କର

ସଭିଙ୍କ ପାଇଁ ଦିବସ ହେଉ ଶୁଭଙ୍କର।

୧୬- ବିଭାସିଲେ ଛାୟାକାନ୍ତ ଲୁଚିଲା ଶର୍ବରୀ

ଆସିଛି ଉଷା ସୁନ୍ଦରୀ ହାତେ ଫଗୁ ଧରି

ବୁଣିଦେବ ବିଲ ବଣ କେଦାର କାନନ

ଜଣାଇବ ଶୁଭ ବାର୍ତ୍ତା ହରି ଜନ ମନ।

୧୭- ପାହିଲା ରଜନୀ ଶେଯ ତେଜ ସତ୍ୱର

ଅଳସ ତେଜିଣ ମନେ ବିଭୁ ସୁମର

ବିଭୁ ପଦାରବିନ୍ଦ ଅମୃତ ପାନ

କରିବା ପାଇଁ ବାର୍ତ୍ତା କଲି ପ୍ରେରଣ।

୧୮- ସୁନ୍ଦର ମଧୁର କରମାଳିକର ପ୍ରାଚୀ ନଭପଟୁ ଉଙ୍କିଲାଣି

ଗୁଞ୍ଜରେ ମଧୁପ ବନେ ଉପବନେ ପ୍ରୀତିମନ୍ତ କାନେ କହିଲାଣି

ଉଠ ବନ୍ଧୁ ଡ଼େରି କର ନାହିଁ

ଶୁଭ ସକାଳର ଶୁଭ ସମାଚାର ପ୍ରଭାତ ଅନିଳ ନିଏ ବୋହି।

୧୯- ପାହିଲା ରଜନୀ ଏବେ ଭାଙ୍ଗୁ ସୁଖ ନିଦ

ଚତୁର୍ଦ୍ଦିଗେ ଶୁଭେ 'ଶୁଭ ସକାଳ' ଶବଦ

ବିହଙ୍ଗମ ଗାଇଲେଣି ମଙ୍ଗଳ ସଙ୍ଗୀତ

ଖେଳି ଯାଉ ଶୁଭ ବାର୍ତ୍ତା ଓ ଶୁଭ ସଙ୍କେତ।

୨୦- ଉଇଁଲାଣି କୁଆଁତାରା ପ୍ରାଚୀ ଗଗନରେ
ବାଜିଲାଣି ଶୁଭ ଶଙ୍ଖ ଦେବ ମନ୍ଦିରରେ
ମଙ୍ଗଳେ ଆସିଛି ଉଷା ମଙ୍ଗଳ ଧରି
ମଙ୍ଗଳ ପରଶି ଦେବ ବିଭୁ ସୁମରି।

୨୧- ପ୍ରଭାତିଲା ବିଭାବରୀ ଉଦେ ହେଲେ ରବି
ଅରୁଣ ଲୋହିତ ଆଭା ମନ ଲୋଭା ଛବି
ସେ ପଦେ କରେ ଜଣାଣ ମଙ୍ଗଳ ପ୍ରଭାତେ
ଭରି ଦେବେ ଦିବ୍ୟ ଭାବ ବିଶ୍ୱବାସୀ ଚିତ୍ତେ।

୨୨- ପ୍ରଭାତ ତପନ ଖସାଇ ଦେଲେଣି
ରଜନୀ ରାଣୀର କଳା ଓଢ଼ଣୀ
ସୁନେଲି କିରଣେ ହସାଇ ଦେଲେଣି
ବିଲ ବଣ ନଈ ପାହାଡ଼ ଭୂଇଁ
ସକଳ ଶକ୍ତିର ଆଧାର ସବିତା
କରିଥାନ୍ତି ସଦା ଜଗତ ହିତ
ପ୍ରଣତି ବାଢ଼ିବା ଶୁଭ ଆଗମନେ
ଶୁଭମୟ ହେବ ଆଜି ପ୍ରଭାତ।



# ନାତି ନାତୁଣୀ

ଆଦ୍ୟାଦେବୀ ପରାତ୍ପରା ଦେବୀ ମହାମାୟୀ
ପହିଲି ପରଶ ପାଇ ହସି ଉଠେ ମହୀ
ଆଦ୍ୟରେ ଆସିଲା ଯେଣୁ ଦେଲି ଆଦ୍ୟା ନାମ
ହସାଇଲା ଦୁଇକୁଳ ଦୁହିତା ଉତ୍ତମ (ଆଦ୍ୟା)

ନାହିଁ ଉଚ୍ଚନୀଚ ଭାବ ସର୍ବସମ ପ୍ରଭୁ ନିରଞ୍ଜନ
ପ୍ରାର୍ଥନା କରୁଛି ପଦେ 'ଆଦିତ୍ୟ' ସେ ହେଉ ଯଶବାନ
(ଆଦିତ୍ୟ)

ବନ୍ଧା ନୁହେଁ ଗୃହର ବନ୍ଧନେ ତେଣୁ ଅନିକେତ
ନିଷ୍କପଟ ମୁକ୍ତ ଶିଶୁସମ ରହିଥାଏ ସଦା କ୍ରୀଡ଼ାରତ
(ଅନିକେତ)

ନାତୁଣୀ ସହ ଆଣ୍ଡାମାନ୍‌ରେ
(ପୁଅର)

ଧରା ଛୁଇଁଲା କୁନି ନାତୁଣୀ ଧରି ଶରତ ଶୋଭା
ଦଶମୀ ତିଥି ଗୁରୁବାରରେ ଲକ୍ଷ୍ମୀ ସେ ମନଲୋଭା (କିସା, ଗୁନୁଲି)

ଅନ୍ତରଙ୍ଗ ମୁହୂର୍ତ୍ତ
(ଗୁରୁଦେବଙ୍କ ସହ ଆଶ୍ରମରେ)

## ଲେଖିକାଙ୍କ ସମ୍ପର୍କରେ

ଅବିଭକ୍ତ କଟକ(ବର୍ତ୍ତମାନ କେନ୍ଦ୍ରାପଡ଼ା) ଜିଲ୍ଲାରେ ୧୯୫୦ ମସିହାରେ ଜନ୍ମ।

ଶିକ୍ଷା:

ଏଚ୍.ଏସ୍.ସି. ପରୀକ୍ଷା: ୧୯୬୭, ଜୟହିନ୍ଦ୍ ହାଇସ୍କୁଲ୍, ଦାଣ୍ଡିସାହି

ପି.ୟୁ : ଶୈଳବାଳା ମହିଳା ମହାବିଦ୍ୟାଳୟ, କଟକ

ବି.ଏ : ଭଦ୍ରକ କଲେଜ, ଭଦ୍ରକ

ବି.ଏଡ୍ : ସରକାରୀ ଟ୍ରେନିଂ କଲେଜ୍, ସମ୍ବଲପୁର

ବୃତ୍ତି : ଶିକ୍ଷକତା

ଭଦ୍ରକ ଜିଲ୍ଲାର ଉତ୍ତରବାହିନୀରେ କାହ୍ନୁଚରଣ ଉଚ୍ଚ ବାଳିକା ବିଦ୍ୟାଳୟରୁ ଶିକ୍ଷକ ଜୀବନ ଆରମ୍ଭ।

ସୁନ୍ଦରଗଡ଼ ଜିଲ୍ଲାର ସୀମାନ୍ତ ଅଞ୍ଚଳରେ ଥିବା ଏକ ଆଦିବାସୀ ଅଧ୍ୟୁଷିତ ଗ୍ରାମ ବନ୍ଧବାହାଲରେ ଥିବା ବାଳିକା ଉଚ୍ଚ ବିଦ୍ୟାଳୟରେ ଏକାଦିକ୍ରମେ ୨୫ ବର୍ଷ ଶିକ୍ଷକତା।

ତା'ପରେ ୧୯୯୯ ମସିହାରୁ ପ୍ରତାପଶାସନ ଉଚ୍ଚ ବିଦ୍ୟାଳୟ, ବାଳକାଟିରୁ ୨୦୦୮ ମସିହାରେ ଅବସର ଗ୍ରହଣ।

ପ୍ରକାଶିକା

ଫୋନ:୮୨୪୯୪୯୬୮୩୫



କାର୍ଶି
ଭୁବନେଶ୍ୱର